# ଅବିନାଶୀ ଅବନୀ

ଓଲ୍ଷ୍ଟା



AOLSTA

**ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ (ଓଲ୍ଷ୍ଟା)**

ବନମାଳୀ ବ୍ରହ୍ମଚାରୀ ଭବନ

ଝାଞ୍ଜିରୀ ମଙ୍ଗଳା, କଟକ-୭୫୩୦୦୯



ମହାରଥୀଙ୍କ ଅନ୍ତିମ ସଂସ୍କାରରେ ସାଥୀ ଓ ସାରଥୀମାନେ

ସ୍ୱର୍ଗତ ଅବନୀ କୁମାର ବରାଳଙ୍କ ଦ୍ୱାଦଶାହ ଉପଲକ୍ଷେ

# ଅବିନାଶୀ ଅବନୀ



ସଂପାଦକ

ଶ୍ରୀ ପ୍ରକାଶ ଚନ୍ଦ୍ର ଜେନା

ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ
ବନମାଳୀ ବ୍ରହ୍ମଚାରୀ ଭବନ, ଝାଞ୍ଜିରୀମଙ୍ଗଳା, କଟକ-୯

# ଅବିନାଶୀ ଅବନୀ

(ସ୍ୱର୍ଗତ ଅବନୀ କୁମାର ବରାଳଙ୍କ ଦ୍ୱାଦଶାହ ଉପଲକ୍ଷେ ପ୍ରକାଶିତ)

ତା ୧୮.୧୧.୨୦୧୩

ପ୍ରକାଶକ :
ଶ୍ରୀ ପ୍ରକାଶ ଚନ୍ଦ୍ର ଜେନା
ସାଧାରଣ ସଂପାଦକ, ଓଲ୍‌ଷ୍ଟା

ଲିପି ସଂଯୋଜନା
ଓଲ୍‌ଷ୍ଟା ସିଷ୍ଟମ ଡିଭିଜନ
ଝାଞ୍ଜିରୀମଙ୍ଗଳା, କଟକ

ମୁଦ୍ରଣ :
ସତ୍ୟଭାମା ଓ୍ୱେଭ୍ ଅଫସେଟ
କଟକ



# ସ୍ୱର୍ଗତ ଅବନୀ କୁମାର ବରାଳ

ସାଧାରଣ ସଂପାଦକ
ନିଖିଳ ଉତ୍କଳ ଶିକ୍ଷକ ମହାସଂଘ

ଆବିର୍ଭାବ: ୦୩.୦୬.୧୯୩୫ ସ୍ୱର୍ଗାରୋହଣ: ୦୭.୧୧.୨୦୧୩

ନିଖିଳ ଉତ୍କଳ ନିମ୍ନ ମାଧମିକ ଶିକ୍ଷକ ସଂଘ(ଓଲ୍ଷ୍ଟା)ର ବ୍ଲକ, ଶିକ୍ଷାଜିଲ୍ଲା,
ରାଜ୍ୟ ସଂଗଠନର ସମସ୍ତ କର୍ମକର୍ତ୍ତାମଣ୍ଡଳୀ, ରାଜ୍ୟସଂଘର ସମସ୍ତ
ସଭ୍ୟ/ସଭ୍ୟା ଏବଂ କାର୍ଯ୍ୟାଳୟର କର୍ମଚାରୀଗଣଙ୍କ ତରଫରୁ

**''ଅଶ୍ରୁଳ ଶ୍ରଦ୍ଧାଞ୍ଜଳି''**

# ସୂଚୀପତ୍ର

❋ **କବିତା ବିଭାଗ**



❋❋❋

# ଅବିନାଶୀ ଅବନୀ

✱ ଶ୍ରୀ ପ୍ରକାଶ ଚନ୍ଦ୍ର ଜେନା

''ଅବିନାଶି ତୁ ତଦ୍‌ବିଦ୍ଧି ଯେନ ସର୍ବମିଦଂ ତତଂ
ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍‌କର୍ତ୍ତୁମର୍ହତି ।''

ଶ୍ରୀମଦ୍ ଭଗବଦ୍ ଗୀତା-୨/୧୭

ଆତ୍ମା ପରମାତ୍ମାଙ୍କ ଅଂଶବିଶେଷ ଓ ଅବିନାଶୀ । ଆତ୍ମା ସମସ୍ତ ଜୀବନ ମଧ୍ୟରେ ବ୍ୟାପୀ ରହିଥିବା କାରଣରୁ କେହି ଆତ୍ମାର ବିନାଶ କରି ପାରିନ୍ତି ନାହିଁ ଆତ୍ମା ଦେହ ସହିତ ସଂଯୁକ୍ତ ହୋଇ ଜାଗତିକ ପ୍ରକ୍ରିୟାର ସୁଖ-ଦୁଃଖ, ପାପ-ପୁଣ୍ୟ ଅହରହ ଭୋଗ କରିଥା'ନ୍ତି । ଦେହାବସ୍ଥାନ କାଳରେ କର୍ମଫଳ ଅନୁସାରେ ଆତ୍ମା ଗୋଟିଏ ଶରୀର ତ୍ୟାଗକରି ଅନ୍ୟ ଏକ ଶରୀର ପ୍ରାପ୍ତ ହୋଇଥା'ନ୍ତି । ଆତ୍ମା ପରମାତ୍ମାରେ ବିଲୀନ ନ ହେବା ପର୍ଯ୍ୟନ୍ତ ଜନ୍ମମୃତ୍ୟୁ ବଳୟ ମଧ୍ୟରେ ଘୂରି ବୁଲୁଥାଏ । ଜନ୍ମ ଯେଉଁଭଳି ଧ୍ରୁବ, ମୃତ୍ୟୁ ମଧ୍ୟ ସେହିଭଳି ଧ୍ରୁବ । ମନୁଷ୍ୟ ଜୀବନର କୈଶୋର, ଯୌବନ, ବାର୍ଦ୍ଧକ୍ୟ ଅବସ୍ଥାମାନ ପରି ଦେହାବସାନ ମଧ୍ୟ ଏକ ଅବସ୍ଥା । ଏହିସବୁ ପାଇଁ ତତ୍ତ୍ୱଦର୍ଶୀମାନେ ଜନ୍ମମୃତ୍ୟୁକୁ ନେଇ କୌଣସି ଶୋଚନା କରି ନ ଥା'ନ୍ତି, ଅଥବା ବିଷାଦଗ୍ରସ୍ତ ହୋଇ ନ ଥା'ନ୍ତି । କିନ୍ତୁ ଆମଭଳି ଅଜ୍ଞାନୀମାନେ ଆଜି ପୂଜ୍ୟ ଦ୍ରୋଣାଚାର୍ଯ୍ୟ ଅବନୀ ବରାଳଙ୍କ ଦେହାବସାନରେ ଶୋକାବିଭୂତ ତଥା ବିଷାଦଗ୍ରସ୍ତ । ଅବନୀ ବରାଳଙ୍କ ଦେହାବସାନ ଘଟିଥିଲେ ମଧ୍ୟ ଗୀତା ତତ୍ତ୍ୱାନୁଯାୟୀ ତାଙ୍କର ଜୀବନ ଦର୍ଶନ ରୂପକ ଆତ୍ମାର କଦାପି ବିନାଶ ହୋଇ ପାରିବ ନାହିଁ । କାରଣ ଅତିସ୍ପଷ୍ଟ । ଶିକ୍ଷକ ସମାଜ ପାଇଁ ଅବନୀ ବରାଳ ଜଣେ ବ୍ୟକ୍ତି ନୁହଁନ୍ତି, ସେ ହୋଇଯାଇଛନ୍ତି ଏକ ତତ୍ତ୍ୱ ଓ ଏକ ଦର୍ଶନ ।

ନିଜର ବ୍ୟକ୍ତି ପରିଚୟରୁ ବହୁ ଉର୍ଦ୍ଧ୍ୱକୁ ଯାଇ ଅବନୀବାବୁ ହୋଇଯାଇଛନ୍ତି ଏକ ଅନୁଷ୍ଠାନ । ବହୁମୁଖୀ ମାନବୀୟ ସଦ୍‌ଗୁଣର ଯଥାର୍ଥ ପ୍ରତିଫଳନ ହୋଇପାରିଛି ତାଙ୍କ ଜୀବନଶୈଳୀରେ । ବିବିଧ ପ୍ରତିଭାର ସମନ୍ୱୟ ଘଟିପାରିଛି ତାଙ୍କ ଜୀବନରେ । ଏକ ଧାରାରେ ସେ ଥିଲେ, ଜଣେ ନାଟ୍ୟକାର, ସଫଳ ସୃଜନଶୀଳ ନାଟ୍ୟ ନିର୍ଦ୍ଦେଶକ,

ଲବ୍ଧ ପ୍ରତିଷ୍ଠିତ ଶିକ୍ଷାବିତ୍, ବିଶିଷ୍ଟ ଗ୍ରନ୍ଥକାର, ସୁ–ସଂଗଠକ, ଅଗ୍ରଗଣ୍ୟ ଶିକ୍ଷକନେତା, ଦରଦି ସମାଜସେବୀ, ଉଚ୍ଚକୋଟୀର ସାହିତ୍ୟିକ, ତଥା ସଚ୍ଚା ବାମପନ୍ଥୀ । ଏହି ସବୁ ଊର୍ଦ୍ଧ୍ୱରେ ସେ ସମାଜର ସବୁବର୍ଗଙ୍କୁ ଭଲପାଉଥିବା ଓ ସମସ୍ତଙ୍କୁ ଆପଣେଇ ପାରୁଥିବା ଭଳି ଜଣେ ସରଳ ମଣିଷ । ଏକ ପ୍ରତିଷ୍ଠିତ ସମାଜରେ ବହୁ ପ୍ରତିଷ୍ଠାର ଅଧିକାରୀ ହୋଇ ମଧ ସେ କେବେବି ସ୍ୱଘୋଷିତ ଆତ୍ମପ୍ରତିଷ୍ଠା ପାଇଁ ବ୍ୟସ୍ତ ବିବ୍ରତ ନ ଥିଲେ । ଅଧିକନ୍ତୁ ସ୍ୱୀକୃତି ଓ ପ୍ରତିଷ୍ଠା ତାଙ୍କୁ ଅନୁଧାବନ କରୁଥିଲା । ଫଳତଃ ନିଜର ସ୍ୱାଭାବିକ୍ ଢଙ୍ଗରେ କାର୍ଯ୍ୟ କରୁ କରୁ ସେ ହୋଇଯାଇଥିଲେ ପ୍ରାଦେଶିକ, ଜାତୀୟ ତଥା ଆନ୍ତର୍ଜାତୀୟସ୍ତରର ଜଣେ ମହାନ ବ୍ୟକ୍ତିତ୍ୱ ।

ଅବନୀ ସାର୍‌ଙ୍କ ଦେହାବସାନରେ ଆଜି ଯେ କେବଳ ଓଡ଼ିଶାର ଶିକ୍ଷକ ସମାଜ ମୁରବିଶୂନ୍ୟ ହୋଇଯାଇଛି ସେତିକି ନୁହେଁ ବରଂ ଉଭୟ ଶିକ୍ଷା ଓ ଶିକ୍ଷକଙ୍କ ପାଇଁ ଏକ ଜାତୀୟ ଓ ଆନ୍ତର୍ଜାତୀୟ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟି ହୋଇଛି । ସମାଜର ଗରିବ ଖଟିଖିଆ ମେହନତି ମଣିଷ ହରାଇଛି ତା' ସୁଖଦୁଃଖର ପ୍ରିୟ ସାଥୀକୁ, ଯୁବସମାଜ ଓ ଛାତ୍ରସମାଜ ହରାଇ ବସିଛି ସେମାନଙ୍କର କ୍ରାନ୍ତିକାରୀ ପଥପ୍ରଦର୍ଶକଙ୍କୁ, ଓଡ଼ିଆ ସାହିତ୍ୟ ହରାଇ ବସିଛି ଜଣେ ପ୍ରତିଷ୍ଠିତ ସାହିତ୍ୟ ସ୍ରଷ୍ଟାଙ୍କୁ ଓ ରାଜ୍ୟ ରାଜନୀତି ହରାଇ ବସିଛି ଏକ ସ୍ଥିତପ୍ରଜ୍ଞ ରାଜନେତାଙ୍କୁ । ସ୍ନାତକୋତ୍ତର ଶିକ୍ଷା ସମାପ୍ତ ପରେ ଅବନୀ ସାର୍‌ଙ୍କ କର୍ମମୟ ଜୀବନ ଆରମ୍ଭ ହୋଇଥିଲା ଅବିଭକ୍ତ କଟକ ଜିଲ୍ଲାର ତେଲ୍‌ଦିଆ ଉଚ୍ଚ ବିଦ୍ୟାଳୟର ପ୍ରଧାନଶିକ୍ଷକ ଭାବରେ । ବେସରକାରୀ ଶିକ୍ଷାନୁଷ୍ଠାନମାନଙ୍କର ଶିକ୍ଷକମାନଙ୍କ ପାଇଁ କୌଣସି ନିର୍ଦ୍ଦିଷ୍ଟ ସେବା ସର୍ତ୍ତାବଳୀ ଅଭାବରୁ ଶିକ୍ଷକ ସମାଜ ବହୁମାତ୍ରାରେ ଶୋଷିତ ହେଉଥିଲେ । ଅତ୍ୟାଚାରୀ ପରିଚାଳନା କମିଟିମାନଙ୍କଦ୍ୱାରା ସକାଳର ଚାକିରି ସନ୍ଧ୍ୟାକୁ ନ ଥିବାର ଭୟ ଘେରି ରହିଥାଏ ପ୍ରତିଟି ଶିକ୍ଷକଙ୍କ ଜୀବନରେ । ଅତ୍ୟାଚାରୀର ଅତ୍ୟାଚାର ଓ ଶୋଷଣରୁ ବାଦ୍ ପଡ଼ି ନ ଥିଲେ ସ୍ୱୟଂ ଅବନୀ ସାର୍ ଓ ପରିଶେଷରେ ତାଙ୍କୁ ହରାଇବାକୁ ପଡ଼ିଥିଲା ତେଲ୍‌ଦିଆ ଉଚ୍ଚ ବିଦ୍ୟାଳୟର ପ୍ରଧାନଶିକ୍ଷକ ପଦ । କିଛି ବର୍ଷର ପ୍ରକାଶନ କାର୍ଯ୍ୟ ତୁଲାଇବା ପରେ ସେ ଯୋଗ ଦେଇଥିଲେ ନବ ପ୍ରତିଷ୍ଠିତ ଖୋର୍ଦ୍ଧା କଲେଜର ଅଧ୍ୟାପକ ଭାବରେ । ଏହା ଥିଲା ଅବନୀ ସାର୍‌ଙ୍କ ଜୀବନର ଏକ ନିର୍ଣ୍ଣାୟକ ମୋଡ଼

ତଥା ମଣିକାଞ୍ଚନର ସଂଯୋଗ । ଛାତ୍ରଜୀବନରୁ ବାମ ଚିନ୍ତାଧାରାରେ ଗଭୀର ପ୍ରଭାବିତ ଅବନୀ ସାର୍‌ଙ୍କ ବୃତ୍ତିଗତ ଜୀବନ ବାନ୍ଧି ହୋଇଯାଇଥିଲା ସେହି ସମାନ ବାମ ଚିନ୍ତାଧାରାର ଅଗ୍ରଗଣ୍ୟ ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ଖୋର୍ଦ୍ଧା କଲେଜରେ ।

ଖୋର୍ଦ୍ଧା କଲେଜର ଅଧ୍ୟାପନା କାର୍ଯ୍ୟ ନିର୍ବାହ କରୁଥିବା ବେଳେ ଶିକ୍ଷକ ସମାଜର ବୃତ୍ତିଗତ ନିର୍ଯାତନା ତାଙ୍କ ପ୍ରାଣକୁ ଆନ୍ଦୋଳିତ କରି ଚାଲୁଥିଲା । ସେହି ଆନ୍ଦୋଳିତ ପ୍ରାଣରୁ ନିସୃତ ହୋଇଥିଲା ଅସଙ୍ଗଠିତ ବିଭିନ୍ନ ବର୍ଗର ଶିକ୍ଷକ ସମାଜକୁ ସଂଗଠିତ କରି ସଂଗ୍ରାମର ଏକ ମିଳିତ ମଞ୍ଚ ସୃଷ୍ଟି କରିବାକୁ । ଏହି ସିଦ୍ଧାନ୍ତକୁ ରୂପ ଦେବାପାଇଁ ସେ ବେସରକାରୀ କଲେଜ ଶିକ୍ଷକ ସଂଘର ସାଧାରଣ ସଂପାଦକ ରୂପେ ନିର୍ବାଚିତ ହୋଇଥିଲେ । ଏହାକୁ ସମ୍ବଳକରି ଓଡ଼ିଶାର ପ୍ରାଥମିକ, ନିମ୍ନ ମାଧ୍ୟମିକ ଓ ମାଧ୍ୟମିକ ଶିକ୍ଷକ ସଂଗଠନର ନେତୃତ୍ୱମାନଙ୍କ ସହ ସଂପର୍କ ସ୍ଥାପନ କରିବାରେ ସକ୍ଷମ ହୋଇଥିଲେ । ବିଧିର ସଂଯୋଗ କ୍ରମେ ଶିକ୍ଷକଗୌରବ ବନମାଳୀ ବ୍ରହ୍ମଚାରୀ ଓ ସାଥୀ କୈଳାସ ଚନ୍ଦ୍ର ମହାପାତ୍ର ଅବନୀସାର୍‌ଙ୍କ ଇପ୍‌ସିତ ଲକ୍ଷ୍ୟ ହାସଲ ଦିଗରେ ପ୍ରମୁଖ ସହାୟତା ପ୍ରଦାନ କରିଥିଲେ । ଏଥିରୁ ଜନ୍ମଲାଭ କରିଥିଲା ମିଳିତ ଶିକ୍ଷକ ଫ୍ରଣ୍ଟ, ପରବର୍ତ୍ତୀ ସମୟରେ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ କମିଟି ଓ ପରିଶେଷରେ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ । ଓଡ଼ିଶାର ଶିକ୍ଷା ବିକାଶ ଓ ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକ ମହାସଂଘର ଅବଦାନ ଅବିସ୍ମରଣୀୟ । ସୁଦୃଢ଼ ସଂଘତି, ଅଦମନୀୟ ନେତୃମଣ୍ଡଳୀ ତଥା ଅବନୀସାର୍‌ଙ୍କ ଅବିଚଳିତ ପରିଚାଳନାରେ ଶିକ୍ଷକ ମହାସଂଘର ଜୟଯାତ୍ରାକୁ ଅହଂକାରୀ ଅମଲାତନ୍ତ୍ର କିମ୍ୱା କୌଣସି ରାଜନୈତିକ ଚକ୍ରାନ୍ତ ପଥରୋଧ କରିପାରି ନ ଥିଲା । ଶିକ୍ଷକ ମହାସଂଘ ନେତୃତ୍ୱରେ ଓଡ଼ିଶାର ଶିକ୍ଷକ ଆନ୍ଦୋଳନ ଜାତୀୟସ୍ତରର ନେତୃତ୍ୱଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସକ୍ଷମ ହେବା ସହିତ ଅବନୀ ସାର୍‌ଙ୍କ ଉତ୍ତୁଙ୍ଗ ନେତୃତ୍ୱ ଗଭୀର ପ୍ରଭାବିତ କରିଥିଲା ଜାତୀୟ ନେତୃମଣ୍ଡଳୀଙ୍କୁ । ବିଚକ୍ଷଣ ନେତୃତ୍ୱର ଯଥାର୍ଥ ସ୍ୱୀକୃତି ସ୍ୱରୂପ ଅବନୀସାର୍ ସର୍ବଭାରତୀୟ ଶିକ୍ଷକ ସଂଗଠନର ସାଧାରଣ ସଂପାଦକ ହେବା ସହ ପରବର୍ତ୍ତୀ ସମୟରେ ବିଶ୍ୱ ଶିକ୍ଷକ ସଂଗଠନର ଉପସଭାପତି ହୋଇ ପାରିଥିଲେ । ଜଣେ

ଓଡ଼ିଆ ପୁଅ ଭାବରେ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଥିବା ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ପରେ ସେ ଥିଲେ ଦ୍ୱିତୀୟ ଓଡ଼ିଆ । ଏହାଠାରୁ ବଳି ଅଧିକ ଗର୍ବ ଓ ଗୌରବର କଥା କ'ଣ ହୋଇପାରେ ।

ସଫଳତାର ଶୀର୍ଷରେ ପହଞ୍ଚି ପାରିଥିବା ଅବନୀସାର୍‌ଙ୍କ ଜୀବନଶୈଳୀର ବୈଶିଷ୍ଟ୍ୟମାନଙ୍କର କୌଣସି ବ୍ୟତିକ୍ରମ ତାଙ୍କର ପରିଣତ ବୟସରେ ମଧ୍ୟ ପରିଲକ୍ଷିତ ହୋଇ ପାରି ନ ଥିଲା । ବ୍ୟବସ୍ଥାର ବ୍ୟତିକ୍ରମ ବିରୁଦ୍ଧରେ ତାଙ୍କର ସ୍ୱର ଓ ଲେଖନୀ ସହିତ ଶେଷପର୍ଯ୍ୟନ୍ତ ମଧ୍ୟ ସେ କୌଣସି ସାଲିସ୍ କରିପାରି ନ ଥିଲା । ଯଥାର୍ଥରେ ସେ ଥିଲେ ଜଣେ ସାଲିସ୍‌ବିହୀନ ସଂଗ୍ରାମୀ । ନିର୍ଦ୍ଦିଷ୍ଟ ରାଜନୈତିକ ଚିନ୍ତାଧାରାରେ ବିଶ୍ୱାସ ରଖିଥିବା ଅବନୀସାର୍ କେବେହେଲେ ତାଙ୍କ ଜୀବଦଶାରେ ଅନ୍ୟ କୌଣସି ବିକଳ୍ପ ଚିନ୍ତାଧାରାକୁ ଅଣଦେଖା କରିଥିବା ଅଥବା ଅନ୍ୟ ଉପରେ ନିଜ ରାଜନୈତିକ ଚିନ୍ତାଧାରାକୁ ଯୋରଜବରଦସ୍ତ ଲଦି ଦେଇଥିବା ମୁଁ କେବେ ବି ପ୍ରତ୍ୟକ୍ଷ କରିନାହିଁ ।

ନିଷ୍ପତ୍ତିକୁ କାର୍ଯ୍ୟକାରୀ କରୁଥିବା ବେଳେ ସେ ଯେତିକି କଠୋରପନ୍ଥୀ, ସାଂଗଠନିକ କ୍ରିୟାକଳାପରେ ସେ ତା'ଠାରୁ ଅଧିକ ଥିଲେ ଗଣତାନ୍ତ୍ରୀକ ଓ ସମାଜବାଦୀ । ସେ ନିଜର ଜୀବଦଶାରେ କେବେବି ବ୍ୟକ୍ତିବାଦର ପ୍ରବକ୍ତା ହୋଇ ନ ଥିଲେ । ଅବନୀସାର୍‌ଙ୍କ ଭଳି ଜଣେ ଅନନ୍ୟ ବ୍ୟକ୍ତିତ୍ୱ ସମାଜରେ ନିଶ୍ଚିତ ବିରଳ ।

ଗୁରୁକୁଳର ଗୁରୁ ଦ୍ରୋଣାଚାର୍ଯ୍ୟ ଅବନୀସାର୍ ଆଜି ସଶରୀରରେ ଆମ ଗହଣରେ ନାହାଁନ୍ତି । ଆଦର୍ଶଗତ ତଥା ରାଜନୈତିକ ବିବର୍ତ୍ତନରେ ଲେନିନ୍‌ଙ୍କ ପ୍ରତିମୂର୍ତ୍ତିକୁ ଋଷବାସୀ ଭାଙ୍ଗୀ ଦେଇ ପାରନ୍ତି ତଥା କ୍ରିମେଲିନ୍ ପ୍ରାସାଦରୁ ଲାଲଝଣ୍ଡା କାଢ଼ି ନେଇ ପାରନ୍ତି, ମାତ୍ର ପୂଜ୍ୟ ଅବନୀସାର୍‌ଙ୍କର ଜୀବନଦର୍ଶନ, ଜୀବନତତ୍ତ୍ୱ ଓ ସାଧନା ସିଦ୍ଧାନ୍ତ କେବେବି ଶିକ୍ଷକ ଜାତିର ହୃଦୟରୁ ସମସ୍ତ ବିବର୍ତ୍ତନ ମଧ୍ୟରେ ଅପସରି ଯିବ ନାହିଁ । କାରଣ, ଅବଶିଷ୍ଟ ଆମ ସମସ୍ତଙ୍କ ପାଇଁ ଅବନୀସାର୍ ଏକ ବ୍ୟକ୍ତି ନୁହଁନ୍ତି – ସେ ଏକ ଦର୍ଶନ, ଏକ ତତ୍ତ୍ୱ ଓ ଏକ ସିଦ୍ଧାନ୍ତ । ସମାଜର ଅଗଣନ ମନୁଷ୍ୟମାନଙ୍କ ପାଇଁ ସେ ଚିରକାଳ ଶାସ୍ୱତ, ଅମର ତଥା ଅବିନାଶୀ ।

***

* ସାଧାରଣ ସଂପାଦକ

ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ

# ସଂଗ୍ରାମ ସରିନାହିଁ ଚାଲିଗଲେ ସେନାପତି

* ଶ୍ରୀ ସାରଦା ପ୍ରସନ୍ନ ମହାପାତ୍ର

ସ୍ୱାଧୀନତା ପୂର୍ବରୁ ଦେଶରେ ରାଜାରାଜୁଡ଼ାଙ୍କ ଶାସନ ଚାଲିଥିଲା । ରାଜା, ଜମିଦାରମାନେ ନିଜ ନିଜ ଅଞ୍ଚଳର ଶାସନ କରିବା ସହିତ ବ୍ରିଟିଶ ଶାସନକୁ ସହାୟତା ପ୍ରଦାନ କରି ଆସୁଥିଲେ । ସେମାନଙ୍କ ଅଞ୍ଚଳରେ ପ୍ରଜାମାନଙ୍କ ପାଇଁ ସ୍କୁଲ ପ୍ରତିଷ୍ଠା କରିଥିଲେ ଓ ତାହା ତାଙ୍କରିଦ୍ୱାରା ପରିଚାଳିତ ହେଉଥିଲା । ସ୍ୱାଧୀନତା ପରେ ୧୯୪୮ ଜନସାଧାରଣଙ୍କ ଉଦ୍ୟମରେ ଘରୋଇ ଶିକ୍ଷାନୁଷ୍ଠାନ ସବୁ ଗଢ଼ିଉଠିଲା ଓ ସେହି ଅଞ୍ଚ ଜନସାଧାରଣଙ୍କ ଦ୍ୱାରା ମନୋନୀତ କେତେକ ସଦସ୍ୟଙ୍କୁ ନେଇ ଗଠିତ ପରିଚାଳନା କମିଟିଦ୍ୱାରା ଏହିସବୁ ବେସରକାରୀ ଶିକ୍ଷାନୁଷ୍ଠାନ ପରିଚାଳିତ ହେଲା । ସରକାର ବାର୍ଷିକ କିଛି କିଛି ଅନୁଦାନ ଏହିସବୁ ପରିଚାଳନା କମିଟିକୁ ଦେଲେ ।

ବହୁସଂଖ୍ୟାରେ ଗଢ଼ି ଉଠିଥିବା ଶିକ୍ଷାନୁଷ୍ଠାନର ପରିଚାଳନା କମିଟିଗୁଡ଼ିକ ସରକାରୀ ଅନୁଦାନକୁ ନିଜର ଅର୍ଥଭାବରେ ବିଚାରକରି ସରକାରୀ ଅର୍ଥ ଓ ଶିକ୍ଷକମାନଙ୍କୁ ଶୋଷଣ କରି ଶିକ୍ଷାନୁଷ୍ଠାନଗୁଡ଼ିକୁ ଏକ ଲାଭଦାୟକ କେନ୍ଦ୍ରଭାବରେ ବିଚାର କଲେ । ଶିକ୍ଷାନୁଷ୍ଠାନ ଗଢ଼ିବା, ଶିକ୍ଷକ ନିଯୁକ୍ତି ଦେବା ଓ ତାଙ୍କର ବେତନ ପ୍ରଦାନ କରିବା ସବୁ ପରିଚାଳନା କମିଟି ହାତରେ ରହିଲା । ଶିକ୍ଷକମାନଙ୍କ ପାଇଁ କିଛି ନିୟମ କାନୁନ ବା ଚାକିରି ସର୍ତ୍ତ ନ ଥିଲା । ଗୋଟିଏ ଅନୁଷ୍ଠାନରେ କମିଟି ଯାହାକୁ ଚାହିଁଲା ତାକୁ ନିଯୁକ୍ତି ଦେଲା ଓ  ବହିଷ୍କାର କଲା ମଧ୍ୟ । ଏଥିରେ କାହାରି କିଛି କରିବାର ନ ଥିଲା । ସରକାର ମଧ୍ୟ କିଛି ହସ୍ତକ୍ଷେପ କରିପାରୁ ନ ଥିଲେ । କ୍ରମଶଃ ଅବସ୍ଥା ଏପରି ହେଲା ଯେ ସ୍କୁଲ କମିଟିର କାର୍ଯ୍ୟକଳାପ ଶିକ୍ଷକମାନଙ୍କ ପାଇଁ ଅତି ଅସହ୍ୟ ହୋଇ ଉଠିଲା । କମିଟିମାନେ ପାଉଥିବା ସରକାରୀ ଅନୁଦାନକୁ ଶିକ୍ଷକମାନଙ୍କୁ ନ ଦେଇ ନିଜସ୍ୱ ବ୍ୟବସାୟରେ ବିନିଯୋଗ କଲେ । କିଛି ଲୋକ ରାଜନୀତି କରିବା ପାଇଁ ସ୍କୁଲ ସବୁ ଗଢ଼ିଲେ ଓ ସେଥିରୁ ଆସୁଥିବା ଆୟରେ ରାଜନୀତି କରି ନେତା ହେଲେ । ଶିକ୍ଷକମାନେ ତ୍ରାହି ତ୍ରାହି ଡାକ ଛାଡ଼ିଲେ । କମିଟି ବିରୁଦ୍ଧରେ କିଛି କହିବାର ସାହସ କାହାରି ନ ଥିଲା କାରଣ କିଛି କହିଲେ କାଲି ସକାଳୁ ଚାକିରି ନ ଥିବ ।

ଏହିପରି ଶିକ୍ଷକମାନଙ୍କର ସଙ୍କଟଜନକ ଅବସ୍ଥାରେ କିଛି ଯୋଗଜନ୍ମାଙ୍କ ଆବିର୍ଭାବ ହେଲା । ବନମାଳୀ ବ୍ରହ୍ମଚାରୀ ବାଙ୍କିରୁ ଆସି ପ୍ରାଥମିକ ଶିକ୍ଷକମାନଙ୍କର

ସଂଗଠନ ଗଢ଼ିଲେ । ଦିବ୍ୟସିଂହ ପଟ୍ଟନାୟକ ହାଇସ୍କୁଲ ଶିକ୍ଷକମାନଙ୍କର ଏକ ସଂଗଠନ ଗଢ଼ିଲେ । ଖୋରଧାର ଅବନୀ ବରାଳ କଲେଜ ଶିକ୍ଷକମାନଙ୍କର ଏକ ସଂଗଠନ ଗଢ଼ିଲେ । ଏହି ସଂଗଠନ ମାଧ୍ୟମରେ ସରକାରଙ୍କ ପାଖରେ ଖଣ୍ଡେ ଖଣ୍ଡେ ଦାବିପତ୍ର ଦେବା ବ୍ୟତୀତ ଆଉ କିଛି ଅଧିକ କରି ପାରିଲେ ନାହିଁ । ଅବନୀ ବରାଳଙ୍କ ନେତୃତ୍ୱରେ ପ୍ରାଥମିକ, ମଧ୍ୟ ଇଂରାଜୀ, ହାଇସ୍କୁଲ ଓ କଲେଜ ସଂଗଠନକୁ ଏକାଠିକରି 'ଶିକ୍ଷକ ମହାସଂଘ' ଗଠନ କରାଗଲା । ବନମାଳୀ ବ୍ରହ୍ମଚାରୀ ସଭାପତି ଓ ଅବନୀ ବରାଳ ସାଧାରଣ ସଂପାଦକ ହେଲେ । ଶିକ୍ଷକ ମହାସଂଘ ଗଠନ ପରେ ଶିକ୍ଷକମାନେ କିଛି ଉତ୍ସାହିତ ହେଲେ ଓ ଆଗାମୀ ଦିନକୁ ଅପେକ୍ଷା କରି ରହିଲେ । ଅବନୀବାବୁ ବାରମ୍ବାର କହି ଆସୁଥିଲେ, ''ଆନ୍ଦୋଳନ ବିନା କିଛି ହୋଇ ପାରିବ ନାହିଁ ।'' କିନ୍ତୁ ଆନ୍ଦୋଳନ କିପରି ହେବ ତା'ର ରୂପରେଖ କ'ଣ ? କିଛି ଭାବି ପାରୁ ନ ଥିଲେ । ଅବନୀବାବୁଙ୍କ ଅତି ତୀକ୍ଷ୍ଣ ସାଂଗଠନିକ ଚିନ୍ତା ଓ ବୁଦ୍ଧିମତ୍ତା ତା'ର ରୂପରେଖ ଆଣି ଦେଲା । ସମାବେଶ, ଧାରଣା, ସ୍ଲୋଗାନ ଦେବାର ବ୍ୟବସ୍ଥା କରାଗଲା । ପ୍ରଥମ ସମାବେଶରେ ମାତ୍ର ୭୫ ଜଣ ଶିକ୍ଷକ ଆସିଲେ । କେହି ସ୍ଲୋଗାନ ଦେଲେ ନାହିଁ । ''ଶିକ୍ଷକ ଏକତା ଜିନ୍ଦାବାଦ୍'' କେହି କହି ପାରିଲେ ନାହିଁ । କିଛି ଆଗୁଆ ଶିକ୍ଷକମାନଙ୍କୁ ଏକାଠି କରି ଟ୍ରେନିଂ ଦିଆଗଲା ଓ ଆନ୍ଦୋଳନର ଅଗ୍ରଭାଗରେ ରହି ଆନ୍ଦୋଳନକୁ ପରିଚାଳନା କରିବାର ଦାୟିତ୍ୱ ଦିଆଗଲା । ଶିକ୍ଷକ ମହାସଂଘ ବର୍ଷ ପରେ ବର୍ଷ ଆନ୍ଦୋଳନ କରିଚାଲିଲା ଓ ଶିକ୍ଷକମାନଙ୍କର ହକ୍ ଦାବି ଚାକିରି ସର୍ତ୍ତ, ସିଧାସଳଖ ବେତନପ୍ରାପ୍ତି, ପେନ୍‌ସନ୍ ଓ ଅନ୍ୟାନ୍ୟ ସବୁ ସୁବିଧା ଆଣି ଶିକ୍ଷକମାନଙ୍କୁ ଦେଲା । ଏପରି ହେଲାଯେ ଯେଉଁଦଳ ସରକାରରେ ଆସିଲା ସେ ଦଳ ଶିକ୍ଷକ ମହାସଂଘକୁ ତାଙ୍କର ପ୍ରତିପକ୍ଷ ବୋଲି ବିଚାର କଲା । ଅବନୀବାବୁଙ୍କ ଠାରୁ ଶିକ୍ଷକମାନେ କ'ଣ ପାଇଛନ୍ତି ତାହା ତାଙ୍କର ଅନ୍ତରାତ୍ମା କହିବ । ସମାଜରେ ଜଣେ ଗଣ୍ୟ ମଣିଷ ହେବା, ଆର୍ଥିକ ସ୍ଥିତିରେ ସୁଧାର ଆଣିବା ଓ ଶିକ୍ଷକର ମର୍ଯ୍ୟାଦା ପାଇବା କେବଳ ତାଙ୍କରି ଦ୍ୱାରା ସମ୍ଭବ ହୋଇଛି । ଆଉ ଯାହା ଯାହା ଘଟିଛି ଓ ଶିକ୍ଷା କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ଆସିଛି ତାହା ଓଡ଼ିଶାବାସି ଓ ଶିକ୍ଷକ ସମାଜ, ଏ ଦେଶର ଜନସାଧାରଣ ନିଜ ଆଖିରେ ଦେଖିଛନ୍ତି ଓ ଅଙ୍ଗେ ଲିଭାଇଛନ୍ତି

ଅନ୍ୟ ଦୃଷ୍ଟିରୁ ବିଚାରକଲେ ସଂଗଠନକୁ ଆଗେଇ ନେବାରେ ତାଙ୍କର ବିଚକ୍ଷଣତା ତାଙ୍କୁ କେବଳ ଓଡ଼ିଶାରେ କାହିଁକି ସମଗ୍ର ଭାରତବର୍ଷରେ ଅଗ୍ରଗଣ୍ୟ କରିପାରିଛି । ରାଜ୍ୟରେ ବା ଦେଶରେ ସବୁ ରାଜନୈତିକ ଦଳମାନଙ୍କର ଗୋଟିଏ ଗୋଟିଏ ଗଣ ସଂଗଠନ ରହିଛି । କଂଗ୍ରେସ ତା'ର ଶ୍ରମିକ ସଂଗଠନ କରିଛି, ଭାରତୀୟ ଜନତାପାର୍ଟି ତା'ର ନିଜସ୍ୱ ଗଣ ସଂଗଠନ କରିଛି, କମ୍ୟୁନିଷ୍ଟ ତା'ର ନିଜସ୍ୱ ଗଣ ସଂଗଠନ କରିଛି ।

ମାତ୍ର ଓଡ଼ିଶାରେ ଯେଉଁ 'ଶିକ୍ଷକ ମହାସଂଘ' ଗଠନ ହୋଇଛି ତାହା ସବୁ ଦଳ, ସବୁ ଧର୍ମ, ସବୁ ଆଦର୍ଶରେ ଥିବା ଶିକ୍ଷକମାନଙ୍କୁ ନେଇ ଗଠିତ ହୋଇଛି । ଭାରତବର୍ଷର ଟ୍ରେଡ୍ ୟୁନିୟନ ଗଢ଼ିଥିବା ବହୁ ବଡ଼ ବଡ଼ ସଂଗଠକ ସେଥିପାଇଁ ଅବନୀବାବୁଙ୍କୁ ବିଶେଷ ଖାତିର କରନ୍ତି ଓ ସମ୍ମାନ ଦିଅନ୍ତି । ସବୁ ଦଳର ଲୋକଙ୍କୁ ନେଇ ଏକ 'ଗଣ ସଂଗଠନ' ଗଢ଼ିବା ବଡ଼ କଷ୍ଟକର ବ୍ୟାପାର; ମାତ୍ର ଅବନୀବାବୁ ତାହା କରି ଦେଖାଇ ଦେଇଛନ୍ତି । ପୁନଶ୍ଚ ନାମ ହେଉଛି 'ଶିକ୍ଷକ ମହାସଂଘ'; ମାତ୍ର କାର୍ଯ୍ୟ ହେଉଛି ଉଗ୍ର ଶ୍ରମିକ ସଂଗଠନର । ଏପରି ପାରଦର୍ଶିତା ଯୋଗୁ ଭାରତବର୍ଷରେ ଓ ପୃଥିବୀର ବିଭିନ୍ନ ସମାଜବାଦୀ ଦେଶରେ ତାଙ୍କର ଖାତିର ରହିଛି ।

ଅଭାବୀ ମଣିଷର ଜଣେ ଦରଦୀ ବନ୍ଧୁଭାବରେ ମୁଁ ତାଙ୍କୁ ଦେଖିଛି । ତାଙ୍କ ସହିତ ମିଶି ଆମେ ସବୁ 'ଛାତ୍ର ଫେଡ଼େରେସନ'ରେ କାର୍ଯ୍ୟ କରୁଥିଲୁ । ଛାତ୍ରସଂଘର ନେତା ଭାବରେ ସେ ଗରିବ ପିଲାମାନଙ୍କୁ କିପରି ସାହାଯ୍ୟ ଓ ପ୍ରେରଣା ଦେଉଥିଲେ ମୁଁ ନିଜେ ଦେଖିଛି ଓ ଅନେକ ଜାଣିଛି । ବିଭିନ୍ନ ସ୍କୁଲ, କଲେଜର ଗରିବ ପିଲାମାନଙ୍କୁ ପାଠ ପଢ଼ିବାର ସୁଯୋଗ ଦେବା ପାଇଁ ଗୋଟିଏ 'ଗରିବ ବନ୍ଧୁ ମେସ୍' ଗଠନ କରିଥିଲେ । ବର୍ତ୍ତମାନର କଲେଜଛକ ପାଖ ଗୋଟିଏ ମଟର ମରାମତି କାରଖାନା ପାଖରେ ସେ ମେସ୍ ଚାଲୁଥିଲା । ରେଭେନ୍ସା, ଖ୍ରୀଷ୍ଟ କଲେଜରେ ପଢୁଥିବା ଗରିବ ଛାତ୍ରମାନେ ଏହି ମେସ୍‌ରେ ରହୁଥିଲେ । ଛାତ୍ର ଫେଡ଼େରେସନର ମିଂଟି ମଧ୍ୟ ସେହିଠାରେ ଚାଲୁଥିଲା । ପୂର୍ବତନ ମନ୍ତ୍ରୀ ହରିଶ ମହାପାତ୍ର, ମନମୋହନ ମିଶ୍ର, ଅବନୀ ବରାଳ, ରାମନାରାୟଣ ହୋତା ପ୍ରମୁଖ ସେତେବେଳେ ଛାତ୍ର ଆନ୍ଦୋଳନ ଚଳାଉଥିଲେ । ଦେଶ, ଜାତି ଓ ଛାତ୍ର ସମାଜକୁ ସଠିକମାର୍ଗରେ ନେବାର ସ୍ୱପ୍ନ ସେମାନେ ଦେଖିଥିଲେ । ଲେଖିବାକୁ ଗଲେ ବହୁ କଥା ଅଛି ଲେଖିବାକୁ । ତାଙ୍କର ସାହିତ୍ୟିକ ଜୀବନ, ନାଟ୍ୟକାର ଜୀବନ ବିଷୟରେ ଅନେକ କଥା କହିବାର ଅଛି ବା ଅବତାରଣା କରିବାର ଅଛି; ମାତ୍ର କ୍ଷୁଦ୍ର ପତ୍ରିକା ମାଧ୍ୟମରେ ଏହା ସମ୍ଭବ ନୁହେଁ ।

ଆଜି ଓଡ଼ିଶାର ଜଣେ ସଂଗ୍ରାମୀ ଶିକ୍ଷକ ନେତା, ମହାନ ସଂଗଠକ, ସୁ-ଲେଖକ ଓ ଶିକ୍ଷକ ଜାତିର ତ୍ରାଣକର୍ତ୍ତା ଆମଠାରୁ ବିଦାୟ ନେଇଗଲେ । ଅଶ୍ରୁପୂତ ଶ୍ରଦ୍ଧାଞ୍ଜଳି ଜଣାଇବା ବ୍ୟତୀତ ଆମେ ଆଉ କ'ଣ କରିପାରିବା

***

* ପ୍ରାକ୍ତନ ସଭାପତି, ଓଲ୍ଷ୍ଟା

ଭାଣପୁର, କଟକ

# ଓଡ଼ିଶା ଶିକ୍ଷା ଇତିହାସରେ ଶୂନ୍ୟତାର ଛାଇ

✱ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର

ନଭେମ୍ବର ୧୮ ତାରିଖ । ଏହି ଦିନଟି ଓଡ଼ିଶାର ବେସରକାରୀ / ସରକାରୀ ଶିକ୍ଷକ ତଥା ଓଡ଼ିଶା ଶିକ୍ଷା ଇତିହାସରେ ଏକ ସ୍ମରଣୀୟ ଦିନ । ଏହି ଦିନ ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ, ସ୍ୱାଧୀନତା ସଂଗ୍ରାମୀ , ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଓ ଓଡ଼ିଶା ଶିକ୍ଷକ ମହାସଂଘର ପ୍ରାଣ ପ୍ରତିଷ୍ଠାତା ବନମାଳୀ ବ୍ରହ୍ମଚାରୀଙ୍କ ଜନ୍ମଦିବସ । ଓଡ଼ିଶାର ଶିକ୍ଷାବ୍ୟବସ୍ଥା ସଂପର୍କରେ ଯଦି ନିରପେକ୍ଷ ଆକଳନ କରାଯାଏ, ତେବେ ବନମାଳୀ ବ୍ରହ୍ମଚାରୀଙ୍କ ଅବଦାନ ପ୍ରମୁଖସ୍ଥାନ ଅଧିକାର କରିବ ; ମାତ୍ର କାଳର ନିଷ୍ଠୁର ନିୟମ ଅନୁସାରେ ଆଜି ସେ ଅବର୍ତ୍ତମାନ । ତାଙ୍କ ଅବର୍ତ୍ତମାନରେ ଓଡ଼ିଶାର ଶିକ୍ଷା ବ୍ୟବସ୍ଥା କିପରି ବିପର୍ଯ୍ୟସ୍ତ ତାହା ସମସ୍ତେ ଅନୁଭବ କରୁଛନ୍ତି । ନିଜ ସ୍ୱାର୍ଥ ପାଇଁ ଶାସନ ଗାଦିର ରକ୍ଷା ପାଇଁ ''ଘର ପଛେ ପୋଡ଼ିଯାଉ, ସଉତୁଣି ରାଣ୍ଡ ହେଉ'' ନ୍ୟାୟରେ ପିଲା ମୂର୍ଖ ଯୋଜନା ହାଟପାଳି ପରି ଘୋଷଣା ହେବାରେ ଲାଗିଛି । ଓଡ଼ିଶାରେ ଗୁଣାତ୍ମକ ଶିକ୍ଷା ଏପରି ଦିଆଯାଉଛି, ସାଧନ, ସମାଧାନ, ଆହୁରି କ'ଣ କ'ଣ ବ୍ୟବସ୍ଥା ପ୍ରଚଳନ କରାଯାଇ ଶିକ୍ଷକମାନଙ୍କୁ ଏପରି ତାଲିମ ଦିଆଯାଉଛି ଯେ, ଅମର୍ତ୍ତ୍ୟ ସେନଙ୍କ ଦ୍ୱାରା ପ୍ରତିଷ୍ଠିତ 'ପ୍ରଥମ'ର ସମୀକ୍ଷା ଅନୁସାରେ  ପଞ୍ଚମ ଶ୍ରେଣୀ ପିଲା ଦ୍ୱିତୀୟ ଶ୍ରେଣୀର ସାହିତ୍ୟ ବହି ପଢ଼ି ପାରୁ ନାହାନ୍ତି । ଶହେ ପର୍ଯ୍ୟନ୍ତ ସଂଖ୍ୟା ଗଣିପାରୁ ନାହାନ୍ତି । ଏକଥାଗୁଡ଼ିକ ଅବତାରଣା କରିବାର ଉଦ୍ଦେଶ୍ୟ ହେଉଛି ଅଧୁନା ଶିକ୍ଷକମାନେ ବା ଶିକ୍ଷକ ସଂଗଠନମାନେ ଶିକ୍ଷାବ୍ୟବସ୍ଥା ସଂପର୍କରେ ମତାମତ ଦେବାକୁ ବା ପ୍ରତିକ୍ରିୟା ପ୍ରକାଶ କରିବାକୁ ସାହସ କରୁନାହାନ୍ତି । ଏହାର ପ୍ରମୁଖ କାରଣମାନଙ୍କ ମଧ୍ୟରୁ ପ୍ରଧାନ କାରଣ ହେଉଛି ଓଡ଼ିଶାର ଶିକ୍ଷକ ସଂଗଠନମାନେ ବହୁଧା ବିଭକ୍ତ ହୋଇଗଲେଣି, ସେମାନଙ୍କର ସମ୍ମିଳିତ ମୂଲଚାଲ କ୍ଷମତା (Collective bar-gaining power) ଆଉ ନାହିଁ । ପୂର୍ବେ ଯେତେବେଳେ ବନମାଳୀ ବ୍ରହ୍ମଚାରୀ ଥିଲେ ସରକାରୀ କଳକୁ ନିର୍ଦ୍ଦେଶାତ୍ମକ ଢଙ୍ଗରେ (dictating terms) ପରିଚାଳିତ ହେବାକୁ ବାଧ କରି ପାରୁଥିଲେ; ମାତ୍ର ଆଜି ଶିକ୍ଷକ ସଂଗଠନମାନଙ୍କର ସେ କ୍ଷମତା ଆଉ ନାହିଁ । 'ଆଜ୍ଞା ଆ[illegible]'ରେ ଯେତିକି [illegible] ସେତିକିରେ ସନ୍ତୁଷ୍ଟ ରହିବାକୁ ବାଧ

ହେଉଛନ୍ତି । 'ଆଜି ନିଅ ପାଞ୍ଚଶ ବାଟକୁ ଆସ'ର ରାଜତ୍ୱ ଶିକ୍ଷା ବିଭାଗର ତଳଠାରୁ ଉପର ପର୍ଯ୍ୟନ୍ତ ଗ୍ରାସ କରିଗଲାଣି । ଶିକ୍ଷା ବ୍ୟବସ୍ଥା ପରିବର୍ତ୍ତନ କଥା ତ ବହୁତଦୂରରେ । ସବୁଆଡ଼େ କେବଳ ଶିକ୍ଷକ ପାଇଁ ଭୟର ବାତାବରଣ – ପିଲାଙ୍କୁ ଅନୁଶାସନରେ ରଖିବାର ଭୟ, ମଧ୍ୟାହ୍ନଭୋଜନ, ଗୃହନିର୍ମାଣ, ଶିକ୍ଷାଦାନ, ପରୀକ୍ଷଣ, ପରୀକ୍ଷା ପରିଚାଳନା । ଶିକ୍ଷକର ସ୍ୱାଧୀନ ଭାବରେ କାର୍ଯ୍ୟା କରିବାର ଅଧିକାରକୁ ଛଡ଼ାଇ ନିଆଯାଇ ଶାସକ ରାଜନେତା, ପ୍ରଶାସକମାନଙ୍କ ମର୍ଜି ଉପରେ କାର୍ଯ୍ୟ କରିବାକୁ ଏକ ପ୍ରକାର ବାଧ କରାଗଲାଣି । ଆଜି ଯଦି ବନମାଳୀ ବ୍ରହ୍ମଚାରୀ ଜୀବିତ ଥାଆନ୍ତେ, ତେବେ ଦୃଢ଼ତାର ସହିତ ଏ ସମସ୍ୟାଗୁଡ଼ିକୁ ମୁକାବିଲା କରି ଦୂର କରିବାକୁ ଦୁର୍ବାର ପଦକ୍ଷେପମାନ ନେଇଥାଆନ୍ତେ । ତାଙ୍କର ମସୀଯୁଦ୍ଧ, ଶୃଙ୍ଖଳ ସର୍ବେ, ସତ୍ୟାଗ୍ରହ ଏହି ସବୁ ବାଧକଗୁଡ଼ିକୁ ନିଶ୍ଚିତଭାବେ ଦୂର କରିବାକୁ ସକ୍ଷମ ହୋଇଥାଆନ୍ତା । ତେଣୁ ଆଜି 'ଯାହା ଦେଇଥିଲ ସବୁତ ନେଲଣି' ଅବସ୍ଥା ସୃଷ୍ଟି ହୋଇ ନ ଥା'ନ୍ତା । ଉପରୋକ୍ତ ସମୀକ୍ଷା ଏକ ହତାଶାବୋଧର ପରିପ୍ରକାଶ ହୋଇପାରେ; ମାତ୍ର ନିର୍ବାସିତର ବିଳାପ କବିତାର ସେହି ଅମୂଲ୍ୟ ପଦ୍‌କ୍ତି 'ନିରାଶାରେ ଆନନ୍ଦ ମିଳଇ ନାହିଁ' ପରିହାର କରି ବନମାଳୀ ବ୍ରହ୍ମଚାରୀ ତାଙ୍କର ପ୍ରାୟ ସମସ୍ତ ସର୍କୁଲାର, ଚିଠି ଇତ୍ୟାଦିରେ ଜାତୀୟକବି ବାଞ୍ଛାନିଧି ମହାନ୍ତିଙ୍କ କବିତା ପଦ୍‌କ୍ତି ''କହ କେଉଁ ଜାତି ପାଇଛି ମୁକତି କରି ହାରି ହୁରି ଗୁହାରି'' ଉଦ୍ଧୃତ କରୁଥିଲେ । ସେହି ପ୍ରେରଣାଦାୟୀ ଉକ୍ତିକୁ ତାଙ୍କ ଜନ୍ମଦିନରେ ସ୍ମରଣ କରି ତାଙ୍କପରି ଆମେ ଜଣେ ଜଣେ ସଂଗ୍ରାମଚେତା ଯଦି ହୋଇ ପାରିବା ତେବେ ତାଙ୍କ ପ୍ରତି ହେବ ଆମର ଐକାନ୍ତିକ ଶ୍ରଦ୍ଧାଞ୍ଜଳି ।

ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯେପରି ଗାନ୍ଧି ଓ ନେହେରୁ ପରସ୍ପର ପରିପୂରକ ଥିଲେ, ସେହିପରି ବନମାଳୀ ବ୍ରହ୍ମଚାରୀ ଓ ଅବନୀ ବରାଳ ପରସ୍ପର ଅନୁପୂରକ ଥିଲେ । ତେଜୋଦୀପ୍ତ ଅବନୀ ବରାଳଙ୍କ ଉଦ୍ୟମ ଓ ବନମାଳୀ ବ୍ରହ୍ମଚାରୀଙ୍କ ପ୍ରୋତ୍ସାହନ ଦ୍ୱାରା ଓଡ଼ିଶା ବେସରକାରୀ କଲେଜ ସଂଘ, ଓଡ଼ିଶା ମାଧ୍ୟମିକ ସ୍କୁଲ ଶିକ୍ଷକ ସଂଘ(OSSTA), ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ (AOLSTA)ର ମିଳିତ ଉଦ୍ୟମରେ ପ୍ରଥମେ କୋଅର୍ଡ଼ିନେସନ କମିଟି ଓ ପରବର୍ତ୍ତୀକାଳରେ ୧୯୭୦ ମସିହା ସେପ୍ଟମ୍ବର ୫ ତାରିଖରେ ବର୍ତ୍ତମାନର ଭଞ୍ଜକଳାମଣ୍ଡପ ଭୁବନେଶ୍ୱରରେ ଜନ୍ମ ନେଇଥିଲା 'ଶିକ୍ଷକ ମହାସଂଘ' । ଶିକ୍ଷକ ମହାସଂଘ ସୃଷ୍ଟିକାଳରୁ ବନମାଳୀ ବ୍ରହ୍ମଚାରୀ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସଭାପତି ଓ ଅବନୀ କୁମାର ବରାଳ ସେକ୍ରେଟେରୀ ଜେନେରାଲ ପଦ ଅଳଙ୍କୃତ

# ଅର୍ନିର୍ବାଣ ଅଗ୍ନି ଶିଖା ଲିଭିଗଲା

✸ ଶ୍ରୀ ଅକ୍ଷୟ ଦାସ

୧୯୬୯ ମସିହା ପୂର୍ବରୁ ଓଡ଼ିଶାରେ ଶିକ୍ଷା ଆଇନ୍ ବୋଲି କିଛି ନ ଥିଲା ଓ କାର୍ଯ୍ୟରତ ଶିକ୍ଷକ ଅଧ୍ୟାପକମାନଙ୍କ ପାଇଁ କୌଣସି ଚାକିରି ସର୍ତ୍ତାବଳୀ ନ ଥିଲା । ଯାହାଫଳରେ ସକାଳ ଚାକିରି ସଂଧ୍ୟା ବେଳକୁ ଚାଲି ଯାଉଥିଲା । ଶିକ୍ଷକମାନେ ଗୋତି ଶ୍ରମିକ ଠାରୁ ଆହୁରି ହୀନ ଅବସ୍ଥାରେ ଥିଲେ । ଯଦିଓ ବହୁ ପୂର୍ବରୁ ମାଧ୍ୟମିକ ଶିକ୍ଷକ ସଂଘ, ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଓ ବେସରକାରୀ କଲେଜ ଶିକ୍ଷକ ସଂଘ ଥିଲା; ମାତ୍ର ଓଡ଼ିଶାର ଶିକ୍ଷା, ଶିକ୍ଷକ, ଶିକ୍ଷାୟତନର ସମସ୍ୟା ସମାଧାନରେ କୌଣସି ଆଖିଦୃଶିଆ କଥା ଘଟି ନ ଥିଲା. ମଣିକାଞ୍ଚନର ସଂଯୋଗ ଭଳି ଓଡ଼ିଶାର ଶିକ୍ଷା ଆକାଶରେ ଏକ ନୂତନ ସୂର୍ଯ୍ୟ ଉଦୟ ହେଲା । ସେ ଥିଲେ ମହାନ ଦିଗ୍‌ଦ୍ରଷ୍ଟା ନିର୍ଭୀକ, ସ୍ପଷ୍ଟବାଦୀ, ସଂଗ୍ରାମୀ ଶିକ୍ଷକ ନେତା ଅବନୀ ବରାଳ । ତାଙ୍କରି ଆହ୍ୱାନରେ ପୂଜ୍ୟ ବନମାଳୀ ବ୍ରହ୍ମଚାରୀ, ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ, କୈଳାସ ମହାପାତ୍ର, ମାଧ୍ୟମିକ ଶିକ୍ଷକ ସଂଘ, ବେସରକାରୀ କଲେଜ ଶିକ୍ଷକ ସଂଘ ଓ ପ୍ରାଥମିକ ଶିକ୍ଷକ ସଂଘକୁ ନେଇ ଗଠିତ ହେଲା 'ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ କମିଟି' । ସେତେବେଳର ଓଡ଼ିଶାର ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ବାସଭବନ ସମ୍ମୁଖରେ ଆନ୍ଦୋଳନରତ ଶିକ୍ଷକମାନଙ୍କ ଉପରେ ମିଥ୍ୟା ଆରୋପ କରାଯାଇ ମଦ ବୋତଲ ରଖି ସରକାରୀ ଗୁଣ୍ଡାମାନଙ୍କ ଦ୍ୱାରା ଭଙ୍ଗାରୁଜା କରାଯାଇ ଶିକ୍ଷକମାନଙ୍କୁ ମାଡ଼ମାରି ଆନ୍ଦୋଳନକୁ ଭଣ୍ଡୁର କରାଗଲା । ସେଇଠୁ ଶିକ୍ଷକ ଆନ୍ଦୋଳନର ମୂଳଦୁଆ ପଡ଼ିଲା । କୌଣସି କାରଣରୁ ପ୍ରାଥମିକ ଶିକ୍ଷକ ସଂଘ ମିଳିତ କ୍ରିୟାନୁଷ୍ଠାନ କମିଟିରୁ ଓହରି ଗଲା । ଅବଶିଷ୍ଟ ତିନୋଟି ସଂଗଠନର ବ୍ରହ୍ମା-ବିଷ୍ଣୁ-ମହେଶ୍ୱର, ବନମାଳୀ-ଅବନୀ-କୈଳାସ ତ୍ରିଶକ୍ତିର ଉଦ୍ୟମରେ ମିଳିତ କ୍ରିୟାନୁଷ୍ଠାନ କମିଟି 'ଶିକ୍ଷକ ମହାସଂଘ'ର ରୂପ ନେଲା । ଯାହାର ସଭାପତି ବନମାଳୀ ବ୍ରହ୍ମଚାରୀ ଓ ସାଧାରଣ ସଂପାଦକ ଅବନୀ ବରାଳଙ୍କ ନେତୃତ୍ୱରେ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ମହାଦ୍ରୁମରେ ପରିଣତ ହେଲା । ଅବନୀ ବରାଳଙ୍କ ବଳିଷ୍ଠ ଅଦମନୀୟ ନେତୃତ୍ୱ, ଦୃଢ଼ ଇଚ୍ଛା ଶକ୍ତି ଯୋଗୁ ଦୀର୍ଘ ବର୍ଷର ଆନ୍ଦୋଳନ, ଧାରଣା, ବିକ୍ଷୋଭ,

ଘେରାଉ, ଆଇନ୍ ଅମାନ୍ୟ ଆନ୍ଦୋଳନ, ପଦଯାତ୍ରା, ମନ୍ତ୍ରୀ ବିଧାୟକମାନଙ୍କୁ କଳା ପତାକା ପ୍ରଦର୍ଶନ ଓ ସେମାନଙ୍କର ବାସଭବନ ଘେରାଉ ଓ ଜେଲ୍‌ଭରୋ ଆନ୍ଦୋଳନ ଇତ୍ୟାଦି ରକ୍ତକ୍ଷୟୀ ସଂଗ୍ରାମ ବଳରେ ବେସରକାରୀ ଶିକ୍ଷକ, ଅଧ୍ୟାପକ, କର୍ମଚାରୀମାନଙ୍କ ପାଇଁ ସମାନ କାମକୁ ସମାନ ଦରମା, ଚାକିରି ସର୍ତ୍ତାବଳୀ, ସିଧାସଳଖ ଦରମା ପ୍ରଦାନ, ଶିକ୍ଷା ଆଇନ୍ ପ୍ରଣୟନ, ଛୁଟି ନିୟମ, ୫୦% ପ୍ରତିଶତ ପେନ୍‌ସନ, ପେନ୍‌ସନ ସହିତ ଟି.ଆଇ. ଓ ୟୁଜିସି ସ୍କେଲ ଇତ୍ୟାଦି ବହୁ ସମସ୍ୟାର ସମାଧାନ ହୋଇ ପାରିବା ସହିତ ଶିକ୍ଷକ ମହାସଂଘ ଓଡ଼ିଶାରେ ଏକ ରାଜନୈତିକ ବିକଳ୍ପ ଭାବରେ ନିଜକୁ ପ୍ରତିଷ୍ଠା କରିପାରିଲା । ଶିକ୍ଷକ ମହାସଂଘର ସେହି ମହାସଂଗ୍ରାମ ରଥର ସାରଥି ଥିଲେ ମହାନ ଯୋଦ୍ଧା କୃଷ୍ଣରୂପୀ ଅବନୀ ବରାଳ ।

ଚାରିଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ଶିକ୍ଷକ ମହାସଂଘର ନେତୃତ୍ୱ ନେବା ଭିତରେ କେବଳ ଓଡ଼ିଶା ନୁହେଁ ସମଗ୍ର ଦେଶର ଶିକ୍ଷା ସଂପର୍କରେ ବିଭିନ୍ନ ଆଇନ, ଧାରା, ନିୟମାବଳୀ ତାଙ୍କର ମୁଖସ୍ଥ । ମନ୍ତ୍ରୀ, ପ୍ରଶାସକ, ପଦସ୍ଥ ଅଫିସରମାନେ ତାଙ୍କ ସହିତ ଆଲୋଚନା କଲାବେଳେ ଅପ୍ରସ୍ତୁତ ହୋଇ ପଡ଼ନ୍ତି କାରଣ ନିଜର ଅକାଟ୍ୟ ଯୁକ୍ତି ଓ ବିଦ୍‌ବତ୍ତା ବଳରେ ଶିକ୍ଷକ ସମାଜର ଦାବିଗୁଡିକୁ ସେ ଏପରି ବଳିଷ୍ଠ ଢଙ୍ଗରେ ଉପସ୍ଥାପନ କରିଥା'ନ୍ତି ଯେ, ସରକାର ଓ ସରକାରୀ ଉଚ୍ଚ କର୍ତ୍ତୃପକ୍ଷ ତାଙ୍କ ଆଗରେ ମୁଣ୍ଡ ନୁଆଇଁବାକୁ ବାଧ ହୋଇଥା'ନ୍ତି । ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ଏହି କାଳଜୟୀ ମହାନ ନେତାଙ୍କର ସଂଗଠନ ଦକ୍ଷତାର ପଟାନ୍ତର ନାହିଁ । ତାଙ୍କ କଥାରେ କି କାଉଁରି ସ୍ପର୍ଶ ଥାଏ କେଜାଣି ସାଥୀ ସହକର୍ମୀମାନେ ଏକମତ ହୋଇଥା'ନ୍ତି । ଜଣେ ଦୂରଦ୍ରଷ୍ଟ ନେତା ଭାବରେ ତାଙ୍କର ଚିନ୍ତା ଓ ଚେତନା ସମଗ୍ର ଶିକ୍ଷକ ଜାତିକୁ ଗୌରବ ପ୍ରଦାନ କରିଛି । ସେ କେବଳ ଓଡିଶା ନୁହେଁ, ସମଗ୍ର ଭାରତବର୍ଷରେ ଏକ ପ୍ରକାର ଶିକ୍ଷାନୀତି ପ୍ରଣୟନର ପ୍ରବକ୍ତା । ଭାରତବର୍ଷର ବିଭିନ୍ନ ବର୍ଗର ଶିକ୍ଷକ, କଲେଜ ଶିକ୍ଷକ ଓ କର୍ମଚାରୀ ସଂଗଠନ ଓ ସର୍ବୋପରି ଭାରତ ବାହାରେ ସମଗ୍ର ବିଶ୍ୱର ଶିକ୍ଷକମାନଙ୍କର ସଂଗଠନର ସେ ଜଣେ ସ୍ରଷ୍ଟା ଓ ବିଶ୍ୱ ଶିକ୍ଷକ ସଂଘର ଉପ-ସଭାପତି ଥିଲେ ଦୀର୍ଘଦିନ । ଶିକ୍ଷକମାନଙ୍କର ଅପରାଜେୟ ଶକ୍ତିକୁ ସେ ଆକଳନ କରିଥିଲେ । ତାଙ୍କରି ଭାଷାରେ "ନିରୀହ ଶିକ୍ଷକ ଗୋଷ୍ଠୀର ଶକ୍ତି ହିଁ ସର୍ବୋଚ୍ଚ ଓ ସର୍ବଶ୍ରେଷ୍ଠ ଶକ୍ତି ଯାହାକି ଅଦମ୍ୟ ଓ ଅପ୍ରତିହତ ଏବଂ ଥରେ ଶାନ୍ତ ଶିକ୍ଷକ ବାଧ ହୋଇ ଆନ୍ଦୋଳନର ପନ୍ଥା ଗ୍ରହଣ କଲେ

କରିଥିଲେ । ଶିକ୍ଷକ ମହାସଂଘ ତାହାର କାର୍ଯ୍ୟକାଳ ମଧ୍ୟରେ ଓଡ଼ିଶାର ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନର ବିକାଶରେ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲା । ଶିକ୍ଷକ ମହାସଂଘର ଦୁର୍ବାର ଆନ୍ଦୋଳନରୁ ସୃଷ୍ଟ 'ଓଡ଼ିଶା ଶିକ୍ଷା ଆଇନ' ଯାହା ସମଗ୍ର ଭାରତବର୍ଷରେ ଅନନ୍ୟ ଥିଲା । ଭାରତବର୍ଷର କୌଣସି ଶିକ୍ଷା ଆଇନ ପ୍ରାଥମିକ ଶିକ୍ଷାଠାରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ଏକକ ଆଇନ୍ ଦ୍ୱାରା ନିୟନ୍ତ୍ରିତ ନୁହେଁ ; ମାତ୍ର ଓଡ଼ିଶା ଶିକ୍ଷା ଆଇନ୍ ଏହାର ବ୍ୟତିକ୍ରମ ଥିଲା । ମାତ୍ର ଦୁଃଖର କଥା ଶିକ୍ଷା ଆଇନ କାର୍ଯ୍ୟକାରୀ ହେବାର ୫୪ ବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ତାହା ଅଦ୍ୟାବଧି ପୂର୍ଣ୍ଣାଙ୍ଗ ରୂପେ କାର୍ଯ୍ୟକାରୀ ହୋଇ ପାରିନାହିଁ । ବେସରକାରୀ ଶିକ୍ଷକମାନଙ୍କର ସେବାସର୍ତ୍ତ, ଅନ୍ୟାୟ ବହିଷ୍କାର ପାଇଁ ଶିକ୍ଷା ଟ୍ରିବ୍ୟୁନାଲ୍, ଦରମା ସମୀକରଣ, ପ୍ରତ୍ୟକ୍ଷ ଦରମା, ଭବିଷ୍ୟନିଧି ଓ ପେନ୍‌ସନ ନିୟମାବଳୀ ପ୍ରଣୟନ ଇତ୍ୟାଦି ଶିକ୍ଷକ ମହାସଂଘର ରକ୍ତକ୍ଷୟୀ ସଂଗ୍ରାମର ଫଳ ଓ ଯାହାର କାଣ୍ଡାରୀ ଥିଲେ ପ୍ରଫେସର ଅବନୀ ବରାଳ: ମାତ୍ର ଆମେ ସ୍ୱାର୍ଥୀ ମଣିଷମାନେ 'ଲଢ଼େଇ ଲଢ଼େଇ ଲଢ଼େଇ ଚାହୁଁ, ଲଢ଼େଇ କରି ବଂଚିବା ଚାହୁଁ' କୁ ଭୁଲି ସାଲିସ୍ ଓ ତୋଷାମୋଦିର ବାଟକୁ ବାଛିନେଇ ନିଜ ନିଜ ଭିତରେ ବିଭେଦ ସୃଷ୍ଟି କଲୁ । ସମାନ ସମସ୍ୟାକୁ ମିଳିତଭାବେ ଉପସ୍ଥାପନ ନ କରି, ସମାନ ତରିକାରେ କାର୍ଯ୍ୟ ନ କରି ନିଜ ନିଜର ପତିଆରା ବୃଦ୍ଧିପାଇଁ ଉଦ୍ୟମ କଲୁ, ଯାହାଫଳରେ ରକ୍ତକ୍ଷୟୀ ସଂଗ୍ରାମଦ୍ୱାରା ଉପଲବ୍ଧ ବ୍ୟବସ୍ଥା, ଶିକ୍ଷକର ନିରାପତ୍ତା / ଶିକ୍ଷା ସଂସ୍କାର ପାଇଁ ପଦକ୍ଷେପ କ୍ରମେ କ୍ରମେ ଅନ୍ତର୍ହିତ ହୋଇଗଲା । ଶିକ୍ଷକ ମହାସଂଘର ନେତୃତ୍ୱମାନଙ୍କ ମଧ୍ୟରୁ କୈଳାଶ ଚନ୍ଦ୍ର ମହାପାତ୍ର, ଅନନ୍ତ କର, ରାଜକିଶୋର ପଟ୍ଟନାୟକ ଯେଉଁମାନେ ଅବନୀ ବରାଳଙ୍କ ସମଯୋଦ୍ଧା ଥିଲେ ସେମାନେ ବୀରଗତି ପ୍ରାପ୍ତ ହୋଇଗଲେ । ଓଡ଼ିଶାର ଶିକ୍ଷା ବ୍ୟବସ୍ଥାର ଶେଷ ଅତନ୍ଦ୍ରପ୍ରହରୀ ଏକୁଟିଆ ଯୁଝି କରି ଥକି ଯାଇ କହି ପକାଇଲେ –

''ଶିକ୍ଷାନାମକ ବସ୍ତୁଟି ଯାହା ମଣିଷ, ମାନବ ଶିଶୁ ତା'ର ବୌଦ୍ଧିକତା ଚିନ୍ତାଚେତନା, ମାନସିକ ଅଭିବୃଦ୍ଧି, ଆବେଗ ସହିତ ସଂପୃକ୍ତ, ସେଠାରେ ମୂଳରୁ ଏମିତି ଚୋଟଚକଟ ଦେଇ ଦେଇ ଭାଷଣବାଜୀ କଲେ, ଆଉ ଦଶବର୍ଷ ଭିତରେ ହୁଏତ ଏମିତି ଏକ ସମୟରେ ଆମେ ପହଞ୍ଚିବୁ ଯାହା ଖଣି ଖୋଳ କରିବା, ଜମି ବିକିବା, ଲାଞ୍ଚ ନେବା/ଦେବା ଆଦିରୁ ଭୟଙ୍କର ସ୍ଥିତି ହେବ–ପିଲାଟିଏ ମା ପେଟରୁ ବାହାରିଲାବେଳେ, ଆଗ ହାତ ବାହାର କରି ପରିଚର୍ଯ୍ୟାକାରିଣୀ ବା ମା' ଠାରୁ ଲାଞ୍ଚ ନେବାକୁ ହାତ ପାତିବ । ସମଗ୍ର ସମାଜର

ଆବେଗିକ ବିନାଶ ଘଟିବ । ଏହାକୁ ପ୍ରତିରୋଧ କରିବାପାଇଁ ଜବରଦସ୍ତ ଏ ନର୍କଗତିର ମୋଡ଼ ବଦଳାଇ ଭଲବାଟକୁ ନେବାପାଇଁ ବୁଦ୍ଧିଜୀବୀ ତଥା ଜନଗଣ ଆମଭରର ହେବା ଉଚିତ ।'' (ଶିକ୍ଷା ସମସ୍ୟା ଡିସେମ୍ବର ୧୧ ସଂଖ୍ୟା) । ମାତ୍ର ଅତ୍ୟନ୍ତ ପରିତାପର ବିଷୟ ତାଙ୍କର ଆହ୍ୱାନକୁ କେହି ଗ୍ରହଣ କଲେ ନାହିଁ । ପରିଶେଷରେ ଅତ୍ୟନ୍ତ ଅନ୍ତର୍ଦାହରେ ଶିକ୍ଷକ ମହାସଂଘର ମୁଖପତ୍ର 'ଶିକ୍ଷା ସମସ୍ୟା'ର ସେପ୍ଟେମ୍ବର ସଂଖ୍ୟାର ସଂପାଦକୀୟରେ ନିଜର ମନକଥା ପ୍ରକାଶ କରି ''ମୋତେ ଶିକ୍ଷକ ନେତା କୁହନ୍ତୁ ନାହିଁ'' ବୋଲି ଲେଖି ଦେଲେ । ଆହୁରି ହୃଦୟ ବିଦାରକ କଥା ହେଉଛି–ମୃତ୍ୟୁର ୩ ଦିନ ପୂର୍ବରୁ ୪ଟା, ଭୁବନେଶ୍ୱରର ଅଫିସ୍ ସାଇନବୋର୍ଡ଼କୁ ଶିକ୍ଷକ ମହାସଂଘର କର୍ମଚାରୀ ସନ୍ତୋଷକୁ ଲଗାଇ ନିଜେ ଶିକ୍ଷକ ମହାସଂଘର ବଡ଼ ସାଇନ୍‌ବୋର୍ଡ଼କୁ କାଢ଼ିଦେଲେ । ଏହି ଘଟଣା ସାରଥୀର ଅଭିମାନ ତ ନୁହେଁ କି'ଣ ? ସୁସ୍ଥଥାଇ ନଭେମ୍ବର ୭ ତାରିଖ ଦିନ ୧୨ଟାରେ ହୃଦ୍‌ଘାତରେ ଦେହତ୍ୟାଗ କଲେ । ଓଡ଼ିଶାର ଶିକ୍ଷାଜଗତର ଏକ ଉଜ୍ଜ୍ୱଳଜ୍ୟୋତିଷ୍କ ଅନ୍ତର୍ହିତ ହେଲା – ଓଡ଼ିଶାର ଶିକ୍ଷକକୁଳ ଜଣେ ନୀତିନିଷ୍ଠ, ସାଳିସବିହୀନ ସଂଗ୍ରାମୀଙ୍କୁ ଚିରଦିନ ପାଇଁ ହରାଇଲା, ଯେଉଁଛାନ ଅପୂରଣୀୟ ହୋଇ ରହିଲା, ରହିଥିବ । ଓଡ଼ିଶାରେ ତାଙ୍କପରି ସଂଗ୍ରାମୀ, ସ୍ୱାଧୀନଚେତା, ସ୍ୱାଭିମାନୀ ନେତାଙ୍କ ବିକଳ୍ପ ସୃଷ୍ଟି ହୋଇ ପାରିବ ନାହିଁ ବୋଲି ନିଶ୍ଚିତଭାବରେ କୁହାଯାଇ ପାରେ ।

ଶେଷରେ ତାଙ୍କ ତ୍ୟାଗ, ସେବା, ଶିକ୍ଷା ଓ ଶିକ୍ଷକମାନଙ୍କ ସ୍ୱାର୍ଥ ରକ୍ଷାପାଇଁ ତାଙ୍କର ଅବଦାନର କୃତଜ୍ଞତା ସ୍ୱରୂପ ସଂଗୀତ ଜଗତର ଅନ୍ୟ ଏକ ଜ୍ୟୋତିଷ୍କ ସ୍ୱର୍ଗତ ମାନ୍ନା ଦେଙ୍କ ଦ୍ୱାରା ଗୀତ ସ୍ୱର ସଂଗୀତର ପଂକ୍ତିରେ ତାଙ୍କ ପ୍ରତି ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳି ଜଣାଉଛି

''ତୁ ପ୍ୟାର କି ସାଗର ହୈ

ତେରେ ବୁନ୍ଦକେ ପ୍ୟାସି ହମ ।''

ଶିକ୍ଷା ଜଗତର ଦୁଇ ମହାନ ନେତାଙ୍କୁ ଭକ୍ତିପୂତ ପ୍ରଣାମ

* * *

* ସହ ସଂପାଦକ, ଶିକ୍ଷକ ମହାସଂଘ

ତା'ର ପ୍ରଜ୍ୱଳିତ ବହ୍ନି ଲେଲିହାନ ଶିଖା ମେଲି ଯେ କୌଣସି କ୍ଷମତାକୁ ଜାଳିପୋଡ଼ି ଛାରଖାର କରିପାରେ । ଏକତା ହିଁ ଆମର ଶକ୍ତି । ଆପଣମାନଙ୍କର ଦୃଢ଼ତା, ନିଷ୍ଠା ଓ ଏକତା ହିଁ ଆମକୁ ଏ ସଂଗ୍ରାମରେ ଜୟଯୁକ୍ତ କରିବ ।''

ପୋଷ୍ଟର ଲେଖିବା, ଅଠା ତିଆରି କରି କାନ୍ଥରେ ପୋଷ୍ଟର ମାରିବା, ଶିକ୍ଷା ସମସ୍ୟା ପତ୍ରିକାରେ ଠିକଣା ଲେଖିବା, ଡାକ ଟିକେଟ ମାରିବା ନିଜେ କରି ଏ ସବୁ ନେତୃତ୍ୱର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ଦେଖାଇ ଦିଅନ୍ତି । ନେତା ହେବ ତ ସବୁ କାମ ଜାଣିବାକୁ ହେବ । କେବଳ ଭାଷଣ ଦ୍ୱାରା ନେତୃତ୍ୱ ପ୍ରକଟିତ ହୁଏ ନାହିଁ ।

ଶିକ୍ଷା ଓ ଶାନ୍ତି ପାଇଁ ତାଙ୍କର ପ୍ରୟାସ ଅବର୍ଣ୍ଣନୀୟ । ଏଥିପାଇଁ ଶାନ୍ତି ମିସନରେ ସେ ଜାପାନର ହିରୋସିମ, ନାଗାସାକି ସମେତ ରଷ, ପାକିସ୍ଥାନ, ଆଫଗାନିସ୍ଥାନ ପ୍ରଭୃତି ବହୁ ରାଷ୍ଟ୍ର ପରିଦର୍ଶନ କରି ବିଶ୍ୱ ଭ୍ରାତୃତ୍ୱର ପ୍ରଚାର କରିଛନ୍ତି । ସର୍ବଭାରତୀୟ କଲେଜ ଓ ବିଶ୍ୱ ବିଦ୍ୟାଳୟର ସାଧାରଣ ସଂପାଦକ ଭାବେ ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷର ଲକ୍ଷ ଲକ୍ଷ ଶିକ୍ଷକଙ୍କୁ ଐକ୍ୟବଦ୍ଧ କରାଇ ଦେଶବ୍ୟାପି ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ବିଶ୍ୱ ଶିକ୍ଷକ ସଂଘର ଉପ-ସଭାପତି ଭାବେ ପୃଥିବୀର ବହୁ ରାଷ୍ଟ୍ରକୁ ବାରମ୍ବାର ଗସ୍ତ କରିଛନ୍ତି । ସାରା ଜଗତରେ ଉଡ଼ାଇଛନ୍ତି ଓଡ଼ିଶା ଶିକ୍ଷକ ମହାସଂଘର ବୈଜୟନ୍ତୀ । ତାଙ୍କର ଏକନିଷ୍ଠ ସାଧନା ଓ ଦୃଢନେତୃତ୍ୱ ଯୋଗୁ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ଏକ ମର୍ଯ୍ୟାଦା ସଂପନ୍ନ ଶିକ୍ଷକ ତଥା ଗଣ ସଂଗଠନର ମାନ୍ୟତା ଲାଭ କରିଅଛି ।

ଏବେ ଓଡ଼ିଶାରେ କାର୍ଯ୍ୟକାରୀ ହେଉଥିବା ସର୍ବଶିକ୍ଷା ଅଭିଯାନ କାର୍ଯ୍ୟକ୍ରମ ପଛରେ ରହିଛି ଏହି ମହାନ ଶିକ୍ଷକ ନେତାଙ୍କ ବଳିଷ୍ଠ ଅବଦାନ । "ସମସ୍ତଙ୍କ ପାଇଁ ଶିକ୍ଷା" ଶୀର୍ଷକ ବିଶ୍ୱ ସମ୍ମିଳନୀରେ ଗୃହୀତ ପ୍ରସ୍ତାବ ଅନୁଯାୟୀ ଏହି ବ୍ୟବସ୍ଥା କରାଯାଇଥିଲା । ଏହି ସମ୍ମିଳନୀରେ ଭାରତର ପ୍ରତିନିଧି ଭାବେ ସେ ଯୋଗଦେଇଥିଲେ । ତାଙ୍କର ପ୍ରତ୍ୟକ୍ଷ ସଂପାଦନାରେ ଶିକ୍ଷକ ମହାସଂଘର ମୁଖପତ୍ର ରୂପେ ବିଗତ ୩୫ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ନିରବଚ୍ଛିନ୍ନ ଭାବରେ ପ୍ରକାଶ ପାଇ ଆସୁଥିବା "ଶିକ୍ଷା ସମସ୍ୟା"ରେ ଶିକ୍ଷକ ସମାଜର ବିଭିନ୍ନ ସମସ୍ୟା ଓ ମହାସଂଘର ଆନ୍ଦୋଳନାତ୍ମକ ଆଭିମୁଖ୍ୟ ଯଥାର୍ଥ ଭାବେ ପ୍ରତିଫଳିତ ହୋଇଥାଏ । ପ୍ରତି ସଂଖ୍ୟାରେ ତାଙ୍କର ସୁଚିନ୍ତିତ ଓ ସାରଗର୍ଭକ ଲେଖାରେ କଳେବର ପରିପୁଷ୍ଟ ହୋଇଥାଏ । ତାଙ୍କର ଅନ୍ୟ ଏକ ସାର୍ଥକ ଅବଦାନ

ହେଉଛି "ଶିକ୍ଷକ ମହାସଂଘ ଶିକ୍ଷ ପ୍ରତିଷ୍ଠାନ" । ଦୀର୍ଘ ୧୨ବର୍ଷ ଧରି ଏହି ସଂସ୍ଥା ସଫଳତାର ସହିତ ଚାଲିବା ପରେ ଏବେ ବନ୍ଦ ହୋଇ ଯାଇଛି; ମାତ୍ର 'ଶିଶୁ ବିହାର' କାର୍ଯ୍ୟ କରୁଅଛି ଯାହାକୁ ସେ ନିଜେ ଗଢ଼ିଥିଲେ ।

ଶିକ୍ଷା-ଶିକ୍ଷକ-ଶିକ୍ଷାୟତନର ଉନ୍ନତି କଳ୍ପେ ସମଗ୍ର ଜୀବନ କାଳ ନିରବଚ୍ଛିନ୍ନ ଭାବେ ଶାରୀରିକ, ମାନସିକ ସ୍ତରରେ ୫ଟି ୫ଟି ସମଗ୍ର ଶିକ୍ଷକ ଜାତି ଏକତା ସୂତ୍ରରେ ବାନ୍ଧି ଏକ ବିରାଟ ଶକ୍ତିରେ ପରିଣତ କରିବା ତାଙ୍କର ଯେଉଁ ପ୍ରୟାସ ସଫଳ ହୋଇ ପାରିଲା ନାହିଁ । ସବୁ ଉପକାର ପାଇ ସାରିବା ପରେ, ସ୍ୱାର୍ଥ ସାଧିତ ହେଲା ପରେ ଶିକ୍ଷକ ସମାଜ କୃତଜ୍ଞ ରହିବା ତ ଦୂରର କଥା କେତେକ ଅର୍ଥଲିପ୍ସୁ, ପଦପଦବୀ ଲୋଭି, ଅନଭିଜ୍ଞ, ଅପରିଣାମଦର୍ଶୀ ଶିକ୍ଷକ ତଥା ଶିକ୍ଷକ ସଂଗଠନର ନେତୃତ୍ୱ ମହାସଂଘ ଠାରୁ ମୁହଁ ଫେରାଇବାକୁ ଉଦ୍ୟମ କଲେ । ଫଳରେ ସେହି ମହାନ ନେତା କ୍ରାନ୍ତିକାରୀ ଶିକ୍ଷକ ଆନ୍ଦୋଳନର ପିତାମହ ଭୀଷ୍ମ ଅବନୀ ବରାଳ ମହାଭାରତର ଭୀଷ୍ମଙ୍କ ଭଳି ଅଭିମାନରେ ତା ୭.୧୧.୨୦୧୩ ରିଖରେ ଇଚ୍ଛାମୃତ୍ୟୁ ବରଣ କଲେ । ଓଡ଼ିଶା ଶିକ୍ଷ ଆକାଶର ସୂର୍ଯ୍ୟ ଅସ୍ତମିତ ହୋଇଗଲା । ଅନିର୍ବାଣ ଅଗ୍ନିଶିଖା ଲିଭିଗଲା ।

ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ସେ ପୁଣି ଓଡ଼ିଶା ମାଟିରେ ଶହ ଶହ ଅବନୀ ବରାଳଙ୍କୁ ଜନ୍ମ ଦେଇ ତାଙ୍କ ଅପୂରଣୀୟ ଆଶାକୁ ପୂରଣ କରନ୍ତୁ ।

''ଅବନୀ ବରାଳ ଅମର ରହେ''

"ଶିକ୍ଷକ ଏକତା ଜିନ୍ଦାବାଦ୍ ।"

* * *

* ପ୍ରାକ୍ତନ ଯୁଗ୍ମ ସଂପାଦକ,
(ନିଖିଳ ଉତ୍କଳ ଶିକ୍ଷକ ମହାସଙ୍ଘ)
ମାତୃ ବିହାର, ଅରଙ୍ଗ, ତିର୍ତ୍ତୋଲ

# ଅମର ମରଣ ଯାର .....

✸ ଶ୍ରୀ ସୁରେନ୍ଦ୍ର କୁମାର ରାୟ

ସତୁରୀ ଦଶକର ଶିକ୍ଷାକ୍ଷେତ୍ରରେ ଦେଖାଦେଇଥିବା ବିସ୍ମୟକର ପରିବର୍ତ୍ତନର ଅନନ୍ୟ କର୍ଣ୍ଣଧାର,ଓଡ଼ିଶା ଶିକ୍ଷା ଜଗତର ସର୍ବଶ୍ରେଷ୍ଠ ମସ୍ତିଷ୍କ, ବହୁମୁଖୀ ପ୍ରତିଭା ସଂପନ୍ନ ବିରଳ ବିପ୍ଳବୀ,ବହୁ ସଂଗ୍ରାମର ସାଲିସବିହୀନ ସେନାପତି,ଓଡ଼ିଶା ସାରସତ ଭଣ୍ଡାରର ଅନ୍ୟତମ ବିନ୍ଧାଣୀ,ସାମ୍ୟବାଦର ପୂଜାରୀ, ଅସୁମାରି ସାଧାରଣ ମଣିଷକୁ ଭଲ ପାଉଥିବା ଦରଦିମଣିଷ ଅଧ୍ୟାପକ ଅବନୀ ବରାଳ କେବଳ ଏକ ନାମ ନୁହେଁ ଏକ ବିରଳ ଅନୁଷ୍ଠାନ ।

ସବୁ ମଣିଷର ହାତ ଥାଏ; ମାତ୍ର ସବୁ ହାତ ଅନ୍ୟର ଲୁହ ପୋଛିବା ପାଇଁ ଲମ୍ବି ଆସି ନ ଥାଏ। ଯେଉଁ କେତେକ ହାତ ଅନ୍ୟର ଲୁହର ପୋଛିବା ପାଇଁ ଲମ୍ବି ଆସେ ତନ୍ମଧ୍ୟରୁ ଦୀର୍ଘତମ ହାତଟି ଥିଲା ଅଧ୍ୟାପକ ବରାଳଙ୍କର। ଓଡ଼ିଶାର ବେସରକାରୀ ସ୍କୁଲ କଲେଜ ଶିକ୍ଷକମାନଙ୍କ ଚାକିରିର ଦୁର୍ଗତି ଉପଲବ୍ଧି କରି ନିମ୍ନ ମାଧ୍ୟମିକ ଠାରୁ ମହାବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ସମସ୍ତ ଶିକ୍ଷକ ସଂଗଠନକୁ ଏକାଠି କରି ସମଯୋଦ୍ଧା ବନମାଳୀ ବ୍ରହ୍ମଚାରୀ, କୈଳାସ ମହାପାତ୍ର,ବିବେକାନନ୍ଦ ଦାଶ,ଦାଶରଥି ନାୟକ,ପୀତବାସ ବେହୁରିଆ, ଅନନ୍ତ କର ପ୍ରଭୃତିଙ୍କ ସହଯୋଗରେ ଗଠନ କଲେ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ। ଅପୂର୍ବ ମିଳନ ଘଟିଲା ପ୍ରଜ୍ଞା ସହିତ ଜ୍ଞାନର। ତାଙ୍କରି ନେତୃତ୍ୱରେ ଆରମ୍ଭ ହେଲା ବହୁ ଦୁର୍ବାର ଆନ୍ଦୋଳନ। ଶିକ୍ଷକ ମହାସଂଘ ରୂପ ନେଲା ରାଜ୍ୟର ସର୍ବବୃହତ୍ ଗଣ ସଂଗଠନଭାବେ। ଗୋଟିଏ ପରେ ଗୋଟିଏ ଦାବି ହାସଲ କରି ଶିକ୍ଷକ, ଶିକ୍ଷାର୍ଥୀ, ଶିକ୍ଷାନୁଷ୍ଠାନ ଓ ଶିକ୍ଷା ବ୍ୟବସ୍ଥାର ସୁଧାର ଆଣିପାରିଲେ। ଏ ସମସ୍ତ ସମ୍ଭବ ହେଲା ତାଙ୍କର ବୈପ୍ଳବିକ ଚିନ୍ତାଧାରା ଓ ସାଲିସବିହୀନ ନେତୃତ୍ୱ ଯୋଗୁଁ।

ଭାରତର ମହାକାଶ ବିଜ୍ଞାନୀଙ୍କ ମଧ୍ୟରେ ଡକ୍ଟର ସତିଶ ଧାବନଙ୍କ ନାମ ସର୍ବାଗ୍ରେ ରହିବ। ଯେତେବେଳ ଭାରତର ପ୍ରଥମ ରକେଟ ଉତ୍କ୍ଷେପଣ ବିଫଳ ହେଲା,ସେତେବେଳେ ଏହି ବିଫଳତାର ସମସ୍ତ ଦୋଷ ସେ ନିଜ ମୁଣ୍ଡକୁ ନେଇଥିଲେ;

ମାତ୍ର ତା'ର ଅଳ୍ପ କେଇଦିନ ପରେ ଯେତେବେଳେ ଏହାର ସଫଳ ଉତ୍କ୍ଷେପଣ କରାଗଲା ସେତେବେଳେ ସେ ଏହାର ସମସ୍ତ ଶ୍ରେୟ ତାଙ୍କର ସହକାରୀ ବୈଜ୍ଞାନିକମାନଙ୍କୁ ହିଁ ଦେଇଥିଲେ। ଅଧ୍ୟାପକ ବରାଳ ହେଉଛନ୍ତି ଡଃ ଧାବନଙ୍କ ଭଳି ଅନ୍ୟ ଏକ ବ୍ୟକ୍ତିତ୍ୱ ଯେ ତାଙ୍କ ଜୀବନର ଅସୁମାରି ସାଂଗଠନିକ ସଫଳତାକୁ ମିଳିତ ଆନ୍ଦୋଳନ ଓ ମିଳିତ ନେତୃତ୍ୱର ସଫଳତା ଭାବେ ଗ୍ରହଣ କରିଥିବା ବେଳେ ବିଫଳତାକୁ ସେ ନିଜେ ଖେଲୁଆଡ଼ ମନୋଭାବ ଭାବେ ଗ୍ରହଣ କରି ନେଇଛନ୍ତି।

ବୃତ୍ତିରେ ଅଧ୍ୟାପକ ଥାଇ ବି ବ୍ରତରେ ଥିଲେ ଜଣେ ଖାଂଟି ମାର୍କସୀୟ ଦର୍ଶନବିଶ୍ୱାସୀ, ବାସ୍ତବବାଦ ଦୃଷ୍ଟିଭଙ୍ଗି ସଂପନ୍ନ ମେହେନତି ଜନଗଣଙ୍କୁ ଭଲ ପାଉଥିବା ଜଣେ ନିରୋଳା ମଣିଷ। ମାର୍କ୍ସବାଦୀ ଦର୍ଶନ ପ୍ରତି ଥିଲା ତାଙ୍କର ନିରୁତା ଅନୁରକ୍ତି। ପୂର୍ବ ଇଉରୋପ ଓ ସୋଭିଏତ ୟୁନିଅନର ପତନ ପରେ ବି ଖଟିଖିଆ ମଣିଷର ମୁକ୍ତି ପାଇଁ ସମାଜବାଦ ଯେ ଏକମାତ୍ର ବିକଳ୍ପ ଏ ଆତ୍ମବିଶ୍ୱାସ ତାଙ୍କ ମଧ୍ୟରୁ କେବେ ବି କମି ନ ଥିଲା। ସମାଜବାଦର ସାମୟିକ ବିଚ୍ୟୁତି ପାଇଁ ସେ କେବେ ବି ବିଚଳିତ ନ ଥିଲେ। ଏପରି ଏକ ସନ୍ଧିକ୍ଷଣରେ ଅଧ୍ୟାପନାରୁ ଅବସର ନେବା ପରେ ସେ ହୋଇଥିଲେ ଓଡ଼ିଶା ଶାଖା ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସଂପାଦକ। ସମାଜ ବ୍ୟବସ୍ଥା ଓ ଶିକ୍ଷା ବ୍ୟବସ୍ଥାର ଏକ ବିଜ୍ଞାନସମ୍ମତ ପରିବର୍ତ୍ତନ ପାଇଁ ଭିନ୍ନ ଭିନ୍ନ ଭାବରେ ଅନୁଷ୍ଠିତ ସଂଗ୍ରାମର ପୁରୋଭାଗରେ ସର୍ବଦା ନିଜକୁ ସାମିଲ କରୁଥିଲେ।

କେବଳ ନିଜ ରାଜ୍ୟରେ ନୁହେଁ,ଦେଶ ତଥା ସମଗ୍ର ବିଶ୍ୱ ଶିକ୍ଷକ ସଂଗଠନର ସଫଳ ନେତୃତ୍ୱ ଭୂମିକା ତାଙ୍କୁ ଚୀରଅମର କରି ରଖିବ-ଏଥିରେ ଟିକିଏ ବି ସନ୍ଦେହ ନାହିଁ। ଓଡିଶା ସାରସ୍ୱତ ଭଣ୍ଡାରକୁ ତାଙ୍କର ଅବଦାନ ତାଙ୍କୁ ଆଗାମୀ ସବୁ ଦିନ ପାଇଁ ସ୍ମରଣ ରଖିବ।ବ୍ୟକ୍ତି ହିଁ ସମାଜର ଆଧାର,ଏହାର ପ୍ରଗତି ନୈତିକତା ଉପରେ ନିର୍ଭର କରେ-ଏହା ହିଁ ତାଙ୍କରି ଦୃଷ୍ଟିଭଙ୍ଗୀ। ନୈତିକତାର ସେ ଥିଲେ ଏକ ମୂର୍ତ୍ତିମନ୍ତ ପ୍ରତୀକ। ଯେଉଁଠି ଜଣେ ବ୍ୟକ୍ତିର ବାସ୍ତବ ଚରିତ୍ର ଓ ଦେଖେଇ ହେଉଥିବା ରୂପ ମଧ୍ୟରେ ବିଶେଷ ଫରକ ନ ଥାଏ,ସେଇଠି ହିଁ ସୃଷ୍ଟି ହୁଏ ନୈତିକ ସାହସ। କାହାକୁ ବେଉଁଠି ଭୟ କରିବାର ଆଶଙ୍କା ନ ଥାଏ। ଏହା ମଧ୍ୟ ସ୍ୱାଭିମାନ ଓ ଆତ୍ମସମ୍ମାନର ମୂଳପିଣ୍ଡ। ଅଧ୍ୟାପକ ବରାଳଙ୍କ ନୈତିକ ସାହସ ଥିଲା ଖୁବ ପ୍ରବଳ। ଯେଉଁଥି ପାଇଁ ମନ୍ତ୍ରୀ ହୁଅନ୍ତୁ ବା ସଚିବ, କି କମିଶନର କାହାରି ସହିତ ଆଲୋଚନା କାଳରେ ନିଜର ଦୃଢ଼ତା ଓ

ଅନନନୀୟତା ଦେଖାଇ ଦାବି ହାସଲ କରି ପାରୁଥିଲେ । ଏହା ହିଁ ତାଙ୍କ ନିଷ୍ଠା ଓ ବ୍ୟକ୍ତିତ୍ୱର ବୈଚିତ୍ର୍ୟ । ସାରା ଜଗତରେ ଉଡ଼ାଇ ପାରିବାରେ ସକ୍ଷମ ହୋଇଛନ୍ତି ଶିକ୍ଷକ ମହାସଂଘ ଓ ଓଡ଼ିଶା ଶିକ୍ଷକ ସ୍ୱାଭିମାନର ବିଜୟ ବୈଜୟନ୍ତୀ ।

ତାଙ୍କ ମହନୀୟତାରେ ସଦା ଉଦ୍‌ବୁଦ୍ଧ ଏ ଶିକ୍ଷକ ଜାତି ପ୍ରତି ମୁହୂର୍ତ୍ତରେ ତାଙ୍କୁ କୃତଜ୍ଞତା ଜଣାଇବ । ମୁଁ ଜଣେ ସାଧାରଣ ନିମ୍ନ ମାଧ୍ୟମିକ ବିଦ୍ୟାଳୟର ଶିକ୍ଷକ, ଯାଜପୁର ବ୍ଲକ ମହାସଂଘର ସଂପାଦକ ଥିବା ସମୟରେ ୧୯୮୯ ମସିହାରେ ପ୍ରାଥମିକ ଶିକ୍ଷକମାନେ ସରକାରୀ କର୍ମଚାରୀ ଭାବେ ଘୋଷିତ ହେଲେ । ପରେ ପରେ ହେଉଥିବା ଶିକ୍ଷକ ମହାସଂଘର ବାର୍ଷିକ ସମ୍ମିଳନୀରେ ନିମ୍ନ ମାଧ୍ୟମିକ ଠାରୁ ମହାବିଦ୍ୟାଳୟ ପର୍ଯ୍ୟନ୍ତ ସମସ୍ତ ଶିକ୍ଷକଙ୍କ ମନରେ ସରକାରୀ ହେବାର ପ୍ରବଣତା ପ୍ରବଳ ଥାଏ । ପୂର୍ବ ରାତ୍ରିରେ ମହାସଂଘ କାର୍ଯ୍ୟକାରୀ କମିଟି ଏକ ସର୍ବସମ୍ମତ ପ୍ରସ୍ତାବ ନେବାରେ ବୋଧ ହୁଏ କିଛି ଅସୁବିଧା ଦେଖାଦେଇଥାଏ । ସେ ବାବଦରେ ମୋ ଭଳି ସାଧାରଣ ଶିକ୍ଷକର ଜାଣିବାର ଅବକାଶ ନ ଥାଏ । ସ୍ୱାଭାବିକ ଭାବେ ମୁଁ ମୋର ବକ୍ତବ୍ୟ ଓ ପ୍ରସ୍ତାବ ଉପସ୍ଥାପନ କରି ମୋ ସ୍ଥାନକୁ ଫେରିଆସିବା ମାତ୍ରେ ଅଧ୍ୟାପକ ଦୁର୍ଯ୍ୟୋଧନ ପରିଡ଼ା ମୋତେ ଆସି କହିଲେ ଯେ, ଅଧ୍ୟାପକ ବରାଳ ଆପଣଙ୍କୁ ଧନ୍ୟବାଦ ଜଣାଉଛନ୍ତି । କାରଣ କ'ଣ ମୁଁ ଜାଣି ନ ପାରି ଅଧ୍ୟାପକ ପରିଡ଼ାଙ୍କୁ ପଚାରିବାରୁ ସେ କହିଲେ ଆପଣଙ୍କ ବକ୍ତବ୍ୟ ଓ ପ୍ରସ୍ତାବ ହିଁ ଗତ ରାତ୍ରୀର ଏକ ଅଚଳ ଅବସ୍ଥାକୁ ଦୂର କରିବାରେ ସହାୟକ ହୋଇଛି । ଅଧ୍ୟାପକ ବରାଳ ଓ ମୋ ଭିତରେ ଆକାଶ ପାତାଳର ପ୍ରଭେଦ । ତଥାପି ସାମାନ୍ୟ ଏକ ପ୍ରସ୍ତାବ ପାଇଁ ଧନ୍ୟବାଦ ଦେବା କମ୍ ମହନୀୟତା ନୁହଁ । ଏ ପ୍ରକାର ମହନୀୟତା କେବଳ ଅଧ୍ୟାପକ ବରାଳଙ୍କ ପରି ବ୍ୟକ୍ତିତ୍ୱଙ୍କ ପକ୍ଷରେ ସମ୍ଭବ । ତାଙ୍କ ବ୍ୟକ୍ତିତ୍ୱ ନିକଟରେ ବାସ୍ତବିକ ମୋ ଭଳି ଅନେକ ଭିନ୍ନ ଭିନ୍ନ ଭାବେ ଋଣୀ ।

ଭାଷ୍ୟକାର ବରାଳଙ୍କ ଗଳ୍ପଗୁଡିକର ଯାଦୁକରି ସ୍ପର୍ଶ ସହଜରେ ପାଠକଙ୍କ ମନକୁ ଛୁଇଁଥାଏ । ବାର ବାର ପଢ଼ିବାକୁ ମନ ହୁଏ, ଅଳ୍ପ ସମୟରେ କାହାଣୀର କଥାବସ୍ତୁ ପାଠକ ମନରେ ରହିଯାଏ । ଚିନ୍ତା ରାଜ୍ୟରେ ବହୁ ଆଲୋଡ଼ନ ସୃଷ୍ଟି କରେ ।

ଇଟାଲିର ଏକତ୍ରିକରଣ ସମୟରେ ଏହାର ଅନ୍ୟତମ ଚିନ୍ତାନାୟକ ତଥା କର୍ମବୀର ଜୋଶେଫ୍ ମାଜିନି କହିଥିଲେ- ''ପୂର୍ବପୁରୁଷଙ୍କ ମହତ୍ୱ ଉପାସନା କରିବା ଓ ସେମାନଙ୍କ କବରରୁ ଭବିଷ୍ୟତ ଚିନ୍ତା ଚେତନାର ଉପକରଣ ଅନୁସନ୍ଧାନ କରିବା

ଆମର ଏକାନ୍ତ କର୍ତ୍ତବ୍ୟ।" ଯୁଗ ପୁରୁଷଙ୍କ ଆଦର୍ଶ ଆମକୁ ଆହ୍ୱାନ ଦିଏ ଆଗାମୀ କର୍ମସୂଚୀ ପାଇଁ। ଆଜି ସମଗ୍ର ଶିକ୍ଷକ ଜାତିର ଯୁଗପୁରୁଷ ଅଧ୍ୟାପକ ବରାଳଙ୍କ ଆଦର୍ଶକୁ ପାଥେୟ କରି ତାଙ୍କର ପ୍ରଦର୍ଶିତ ମାର୍ଗରେ ଅଗ୍ରସର ହେବାକୁ ତାଙ୍କର ଉତ୍ତର ଦାୟାଦମାନେ ଅବଶ୍ୟ ବ୍ରତୀ ହେବେ ଓ ଏହା ହିଁ ହେବ ତାଙ୍କ ଅବର୍ତ୍ତମାନରେ ତାଙ୍କ ପ୍ରତି ଚୀର କୃତଜ୍ଞ ଏକ ଜାତିର ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳି।

ବ୍ୟକ୍ତିରୁ ଅନୁଷ୍ଠାନରେ ପରିଣତ ହୋଇଥିବା ଅବନୀ ବରାଳ ମୃତ୍ୟୁଞ୍ଜୟୀ-ଅଗ୍ନିମାନ। ସେ ଗ୍ରୀକ୍ ପୁରାଣର PHOENIX ଭଳି ଦଗ୍ଧିଭୂତ ପାଉଁଶ ଭିତରୁ ବାରମ୍ବାର ଉତୁରି ଆସୁଥିବା ମଣିଷଟିଏ।

"O' death where is thy sting,
O' grave where is thy glory,
He lives,
He wakes,
His death is dead,not He."

ତାଙ୍କରି ଆଦର୍ଶ ଆମକୁ ଆଗକୁ ଯିବାକୁ ଅନେକ ଅନେକ ପ୍ରେରଣା ଦେଉ।

"କୋଟି କୋଟି ମନ ଆଜି ଭାଙ୍ଗି ପଡ଼େ ଦୁଃଖେ,
କୋଟି ପ୍ରାଣେ ନମସ୍କାର ତୁମ ପାଇଁ ଛୁଟେ।"

କୋଟିଏ ନମସ୍କାର ମଧ୍ୟରେ ଛୋଟିଆ ନମସ୍କାରଟିଏ ଦେଇ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି।

* * *

* ପ୍ରାକ୍ତନ ଯୁଗ୍ମ-ସମ୍ପାଦକ
ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ
ଭୁବନେଶ୍ୱରପୁର, ପାଣିକୋଇଲି, ଯାଜପୁର

# ହୃଦୟର ଭାଷା

✸ ଶ୍ରୀ ସତ୍ୟପ୍ରିୟ ନାୟକ

ଏବେ ବାପ ନ ଥିଲା ପୁଅ ପରି ମୁଁ ଛେଉଣ୍ଡ ହୋଇ କହିବି କାହାକୁ ? x x x x ଏବେ ମାଗିବି କାହାକୁ ? ମୋ ବେଦନା କାହାକୁ କହିବି ? ସାରଦା, ଦାଶରଥି କି ବିବେକାନନ୍ଦ, ଯମେଶ୍ୱର କୌଣସି କାରଣରୁ ନ ଚାହିଁଲେ, ଆନ୍ଦୋଳନ ବନ୍ଦ କରିଦେଲେ କାହାକୁ ଯାଇ ଶୁଣାଇବି ? କାହା ଆଗରେ ଗୁହାରି କରିବି ? x x x x ଏବେ ଆପଣଙ୍କୁ ନ ପାଇଲେ, ମୁଁ ଇସ୍ତଫା ଦେବି କାହାକୁ ? ମୋର ଆତ୍ମଗ୍ଲାନି ବଖାଣିବି କାହା ଆଗରେ ? ବାନପ୍ରସ୍ଥ ଯିବି ବୋଲି କହିବି କାହାକୁ ?''

ଏହା ହୃଦୟର କଥା ଥିଲା ଆମମାନଙ୍କର ପ୍ରିୟନେତା ଶିକ୍ଷକ ମହାସଂଘର ମହାରଥୀ, ବିଶିଷ୍ଟଗାଳ୍ପିକ, ସାମ୍ୟବାଦୀ ନେତା, ସ୍ତମ୍ଭକାର, ଦିବଂଗତ ଅଧ୍ୟାପକ ଅବନୀ ବରାଳଙ୍କର । ଯେ ଶିକ୍ଷକ ସେବକ ଦିବଂଗତ ବ୍ରହ୍ମଚାରୀଙ୍କ ଉଦ୍ଦେଶ୍ୟରେ ଏକ ଲେଖା ଲେଖିଥିଲେ । ବ୍ରହ୍ମଚାରୀଙ୍କ ଦେହାନ୍ତ ପରେ ଯେ ନିଜକୁ ଛେଉଣ୍ଡ ବୋଲି ଭାବୁଥିଲେ, ସମଗ୍ର ଶିକ୍ଷକ ସମାଜ ଦିବଂଗତ ବରାଳଙ୍କୁ ହର୍ତ୍ତାକର୍ତ୍ତା ଭାବେ ଧରିନେଇଥିଲା, ଆଜି ତାଙ୍କରି ଅବର୍ତ୍ତମାନରେ ଶିକ୍ଷକ ସମାଜ ତାଙ୍କରି ସେଇ ଉକ୍ତିକୁ ଦୋହରାଇ କହୁଛି, ''ବାପ ନ ଥିଲା ପୁଅ ପରି ଆମେ ଛେଉଣ୍ଡ ସେଇ କହିବୁ କାହାକୁ ?''

ଆପଣ ଥିଲେ ଆମର ସାହା ଭରସା । ଡର କାହାକୁ ଭୟ କାହାକୁ ଏହି ଭୟରେ ଆମେ ବସି ଯାଇଥିଲୁ, କିଛି ସମସ୍ୟା ଉପୁଜିଲେ, ତାହା ବ୍ୟକ୍ତିଗତ ଗୁହାରି କରିବୁ କାହା ଆଗରେ ? କିଏ କରିବ ତା'ର ସମାଧାନ ? ଇମିତି କେତେକେତେ କଥା ତ ମନକୁ ଆସୁଛି ।

''ଆପଣ ବିମୂର୍ତ୍ତ ହୋଇ ସଂଘକୁ ସଂଘର ସଭ୍ୟ, ଅସଭ୍ୟ, ଅପସଭ୍ୟ ସମସ୍ତଙ୍କୁ ଆଗଭଳି ଶକ୍ତି ଦିଅନ୍ତୁ, ସାମର୍ଥ୍ୟ ଦିଅନ୍ତୁ । ଗାଳି ଦିଅନ୍ତୁ । କ୍ଷୁର ଧାରଭଳି ପଥକୁ ଅତୀତ କରି ଶିକ୍ଷା, ଶିକ୍ଷାୟତନ, ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ପାଇଁ ଏକ ସୁନ୍ଦର ସକାଳ ଆଡ଼କୁ ଆଗେଇ ଯିବା ପାଇଁ ଦିଗବାରେଣୀ ହୁଅନ୍ତୁ, କାଣ୍ଡାରୀ ହୁଅନ୍ତୁ ।''

ଦିବଂଗତ ବ୍ରହ୍ମଚାରୀଙ୍କୁ ପ୍ରାର୍ଥନାକରି ଯେଉଁ ଉପଯୁକ୍ତ ଉଦ୍ଧୃତାଂଶଟି ଆପଣ ନିଜେ ଲେଖିଥିଲେ, ହେ ସାଥୀ, ହେ ସାରଥି, ସେହି ବକ୍ତବ୍ୟଟି ଆଜି ଆପଣଙ୍କ ଶ୍ରୀ ଚରଣରେ ନୈବେଦ୍ୟ ସ୍ୱରୂପ ଉତ୍ସର୍ଗ କରି ଏତିକି ପ୍ରାର୍ଥନା କରୁଛୁ, ଶିକ୍ଷା ଅବନୀର ଭାରା କେବଳ ଆପଣ ହିଁ କାନ୍ଧରେ ବୋହିନେବାକୁ ସମର୍ଥ – ଶିକ୍ଷକ ସମାଜର ଦୁଃଖକୁ ଦୂରକରି ସେମାନଙ୍କ ମୁହଁରେ ହସ ଫୁଟାଇବାକୁ କେବଳ ଆପଣ ହିଁ ସମର୍ଥ ........ ଆପଣ ଥଲେ , ଏବେ ଅଛନ୍ତି ..... ଆଗାମୀ ଦିନରେ ଆମ ସହିତ ବି ରହିବେ .. ଏ ଦୃଢ଼ ମନୋବଳ ଆମ ହୃଦୟରେ ଭରି ଦିଅନ୍ତୁ । ❑❑

✸ ଗ୍ରାମ – ବନପ୍ରଭା, ପୁରୀ

# ସଂସାର ଲୀଳାଖେଳା ସରିଲା ଆନ୍ତର

✸ ଶ୍ରୀ ଲକ୍ଷ୍ମୀନାରାୟଣ ରାୟସିଂହ

ସଂଗ୍ରାମର ଐତିହାସିକ ବ୍ୟକ୍ତିତ୍ୱ ଅବନୀ ବରାଳ ଚାଲିଗଲେ ବୋଲି ହୁଟି ପଡ଼ିଗଲା । ସେ ଥିଲେ ଓଡ଼ିଶାର ଶତ ସଂଗ୍ରାମର ଜଣେ ନିରଳସ ଯୋଦ୍ଧା । କେବଳ ଶିକ୍ଷା କ୍ଷେତ୍ରରେ ଅସଙ୍ଗତି, ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ଶିକ୍ଷକମାନଙ୍କୁ ନେଇ ସଂଗ୍ରାମର ମଇଦାନରେ ଅବତୀର୍ଣ୍ଣ କରାଇବାରେ ସେନାପତି ଭାବେ ସେ ସର୍ବମାନ୍ୟ ସର୍ବତ୍ର ପରିଚିତ, ସମ୍ମାନୀତ କେବଳ ଓଡ଼ିଶା ନୁହେଁ, ଭାରତ ବର୍ଷର ବିଶ୍ୱ ବିଦ୍ୟାଳୟ ଓ କଲେଜ ଶିକ୍ଷକ ସଂଘର ସାଧାରଣ ସଂପାଦକ, ସର୍ବୋପରି ବିଶ୍ୱ ଶିକ୍ଷକ ମହାସଂଘରେ ସେ ଉପ ସଭାପତି । ଏକ ଚାଳିଶଟି ଦେଶ ଭ୍ରମଣର ସୁଯୋଗ ଲାଭ କରିଥିବା ଏକମାତ୍ର ଓଡ଼ିଆ, ତେଣୁ ଓଡ଼ିଶାର ଗର୍ବ ଓ ଗୌରବ । ଶିକ୍ଷା ବ୍ୟତୀତ ତାଙ୍କର ନାଟକ ରଙ୍ଗମଞ୍ଚ, ଉପନ୍ୟାସ, ଗଳ୍ପ, ପ୍ରବନ୍ଧ, ଶିଶୁ ସାହିତ୍ୟ, ଅନୁବାଦ କ୍ଷେତ୍ରରେ ଅବଦାନ ଓ ପ୍ରଗତିଶୀଳ ସାହିତ୍ୟ ପତ୍ରପତ୍ରିକା ପ୍ରକାଶନ ଦିଗରେ ଅବିଚଳିତ ଜ୍ଞାନର ଦକ୍ଷତା ସର୍ବଦା ପ୍ରଶାନ୍ତ ଚିତ୍ତ, ହସଖୁସିର ଅବତାର ଏବଂ ସବୁ ବୟସର ବ୍ୟକ୍ତିବିଶେଷଙ୍କୁ ମୁହୂର୍ତ୍ତକରେ ଆପଣେଇ ନେବାର ଚୁମ୍ବକୀୟ ଶକ୍ତି ଯେପରି ତାଙ୍କର ତନୁ ମନରେ ସର୍ବଦା ଉଜ୍ଜୀବିତ ହୋଇ ରହିଥିଲା ।

ଖୋର୍ଦ୍ଧା କଲେଜ ପ୍ରତିଷ୍ଠାତା ପ୍ରାଣନାଥ ପଟ୍ଟନାୟକଙ୍କ ସହଯୋଗୀ ସହଯୋଦ୍ଧାଭାବେ କଲେଜକୁ ଓଡ଼ିଶାରେ ଏକ ପ୍ରମୁଖ ଉନ୍ନତମାନର କରାଇବାରେ ତାଙ୍କର ଅବଦାନ ଅସୀମ । ପ୍ରଗତିଶୀଳ ବୈଜ୍ଞାନିକ ସମାଜବାଦ ଭାବଧାରାରେ ମଶାଲଧାରୀ ମାର୍କ୍ସବାଦୀ ଭାବେ ପ୍ରତ୍ୟକ୍ଷ ଶିକ୍ଷାକ୍ଷେତ୍ରରୁ ଅବସର ନେବାପରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଓଡ଼ିଶାର ରାଜ୍ୟ ପରିଷଦର ସଂପାଦକ ଦାୟିତ୍ୱ ବହନ କରିବା କମ ଗୌରବର କଥା ନୁହେଁ ।

ଗରିବ, ଶୋଷିତ, ଅବହେଳିତ, ନିର୍ଯ୍ୟାତିତ, ମଣିଷର ମୁକ୍ତି ପାଇଁ ଲଢ଼େଇର ମୈଦାନରେ ଅବତୀର୍ଣ୍ଣ ହେବା ସହ ଓଡ଼ିଶା ତଥା ଭାରତ ଓ ପୃଥିବୀର ରାଜନୈତିକ, ସାମାଜିକ, ଅର୍ଥନୈତିକ ସମସ୍ୟାମାନଙ୍କ ଉପରେ ଲେଖାମାନ ପ୍ରକାଶ କରି ଜନସାଧାରଣ

ତଥା ବୁଦ୍ଧିଜୀବୀମାନଙ୍କ ଚେତନାକୁ ଜାଗ୍ରତ କରାଇବାରେ ନିଜକୁ ନିୟୋଜିତ କରାଇ ଥିଲେ ଶେଷ ଜୀବନ ପର୍ଯ୍ୟନ୍ତ । ସେ ବିଷୟରେ ବହୁକଥା ଲେଖି ହେଲେ ମଧ୍ୟ ଆଜିର ସ୍ମରଣିକା ପାଇଁ ଗୋଟିଏ କଥା କହି ଶେଷ କରୁଛି ।

ତାଙ୍କର ଡାଏରୀରେ ଥିବା ଗୋଟିଏ କବିତାର ପଂକ୍ତି ଉଦ୍ଧାରକରି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି –

''ସଂସାରର ଲୀଳାଖେଳା ସରିଲା ଆମ୍ଭର
ସଂସାର ବିଷୟ ବିଷେଁ ହୋଇ ଜରଜର
ସାରସ୍ୱତ ପାଶୋରିଣ ସାରିଦେଲୁ ଆୟୁ ''

ତାଙ୍କୁ କେହି ଯଦି ପଚାରନ୍ତି, ଆପଣଙ୍କ ସାହିତ୍ୟିକ ଲେଖା କାହିଁକି ଦିଶୁ ନାହିଁ ? ସେ କହନ୍ତି ''ଶିକ୍ଷକ ଆନ୍ଦୋଳନ, ଶାନ୍ତି ମୈତ୍ରୀ ସଂଗଠନ ପ୍ରଭୃତିରେ କାର୍ଯ୍ୟପାଇଁ ସର୍କୁଲାର ଲେଖାରେ ତ ସମୟ ଯାଉଛି । ତଥାପି ସମୟ କରି କିଛି ଲେଖୁଛି ।'' ତେଣୁ ''ସାରସ୍ୱତ ପାଶୋରିଣ ସାରି ଦେଲୁ ଆୟୁ '' କବିତାଂଶରେ ତାଙ୍କର ଉକ୍ତ ମନୋଭାବ ପ୍ରକାଶିତ ହୋଇ ଥିବାରୁ କବିବର ରାଧାନାଥଙ୍କ ''ମହାଯାତ୍ରା'' ବାକ୍ୟରେ ଏହି ଅଂଶଟିକୁ ସେ ତାଙ୍କର ''ଡାଏରୀ'' ଟିପି ରଖିଥିଲେ ।

ମଣିଷକୁ ପ୍ରାଣଭରି ଭଲ ପାଉଥିବା, ସାରାଜୀବନ ଲଢ଼େଇ କରି ସଚେତନ କରାଇ ଆସୁଥିବା ମଣିଷଟିର ଲୀଳାଖେଳା ସରିଥିବା ବେଳେ ସେ ଯେ ଅମର – ଏହା ସର୍ବକଣ୍ଠରେ ପ୍ରତିଧ୍ୱନିତ । ସେହି ଉତ୍ତୁଙ୍ଗ ବିପ୍ଳବୀ ବୀର ''ଅବନୀ ବରାଳ'' ଙ୍କ ପ୍ରତି ମୋର ଗଭୀର ମର୍ମ୍ମ ବେଦନାଦଗ୍ଧ ଅନ୍ତରର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

*** 

* କଲେଜ ରୋଡ୍, ଖୋର୍ଦ୍ଧା

# ଅପରାଜେୟ ସେନାପତିଙ୍କର ମହାଯାତ୍ରା

❋ ଶ୍ରୀ ଦାଶରଥି ନାୟକ

ସଂଗ୍ରାମର ମହାରଥୀ, ଅମିତ ବିକ୍ରମରେ ଯୁଦ୍ଧ ପରେ ଯୁଦ୍ଧ କରିଚାଲିଥିବା ଅପରାଜେୟ ଯୋଦ୍ଧାଙ୍କ ରଥ ଆକସ୍ମିକଭାବେ ଅଟକି ଗଲା ନଭେମ୍ବର ୭ ତାରିଖ ଅପରାହ୍ଣରେ । ସ୍ତବ୍ଧ ହୋଇଗଲା ସମଗ୍ର ରାଜ୍ୟ । ରଥଚକ୍ର ଗ୍ରାସିଲା ମେଦିନୀ - ଶୋଇଗଲା ମହାରଥୀ । ଅବସାନ ହୋଇଗଲା ଯୁଗସ୍ରଷ୍ଟା ଅବନୀ ବରାଳଙ୍କ ସଂଗ୍ରାମର ଯୁଗ । ପିତା ଭ୍ରମରବର ବରାଳ ଓ ମାତା ଜେମାମଣି ବରାଳଙ୍କର ଅତି ସ୍ନେହପୁଅ ଏବଂ କୁଶ ଅପାଙ୍କର ଆଦରର ସ୍ନେହଭାଇ 'ପାକୁ' ଡାକ ହଜିଗଲା । ଭାଙ୍ଗିଗଲା ଯୁଗସ୍ରଷ୍ଟାଙ୍କର ସୌଭାତୃତ୍ୱର ପୀରାମିଡ଼ । ଭାଇଚାରାର ପ୍ରବର୍ତ୍ତକ ଅବନୀଭାଇ ତାଙ୍କର ହାତଗଢ଼ା ପ୍ରିୟ ଶିକ୍ଷକ ମହାସଂଘ ଠାରୁ ସମ୍ପର୍କ ଛିନ୍ନ କରି ଚାଲିଗଲେ ଦୂରକୁ, ଅନେକ ଦୂରକୁ । ଯେଉଁଠାକୁ ଯାଇ କେହି କେବେଁ ଫେରିନାହିଁ । ପଛରେ ରହିଗଲେ ସାରା ରାଜ୍ୟର ଅଗଣନ ଶିକ୍ଷକ, ଶିକ୍ଷିକା, ଅଧ୍ୟାପକ, ଅଧ୍ୟାପିକା ଏବଂ ଶିକ୍ଷାକର୍ମଚାରୀଗଣ । ଲୋତକ-ପ୍ଲୁତ ଆଜି ସମସ୍ତ ପ୍ରିୟଜନଙ୍କ ଚକ୍ଷୁ । ଛାଡ଼ିଗଲେ ଆତ୍ମୀୟସ୍ୱଜନ, ବରାଳ ପରିବାରର ଜ୍ଞାତି କୁଟୁମ୍ବ, ସାରା ରାଜ୍ୟର ଶିକ୍ଷକ ଶିକ୍ଷିକାଗଣ ଯାହାଙ୍କୁ ବୁଲି ଭାଉଜ ବୋଲି ସଂବୋଧନ କରନ୍ତି, ସମ୍ମାନ ଦିଅନ୍ତି ସେହି ପ୍ରାଧ୍ୟାପିକା ସହଧର୍ମିଣୀ ଆଦରମଣି ବରାଳ, ପୁଅ ଆକାଶ ଓ ଆଭାସ ବରାଳ, ପୁତ୍ରବଧୂଦ୍ୱୟ, କନ୍ୟା ଆହୁତି ଏବଂ ଇନା ସହ ଅତି ଆପଣାର ନାତିନାତୁଣୀମାନଙ୍କୁ ଯେଉଁମାନେ ଚିତାଗ୍ନି ନିକଟରେ ଅସ୍ଥିର ଚିତ୍ତରେ ଅଶ୍ରୁବର୍ଷଣ କରୁଥିଲେ ।

ସ୍ତବ୍ଧ ହୋଇ ଯାଇଛି ଖୋର୍ଦ୍ଧା ମାଟିର ତାଙ୍କ ହାତଗଢ଼ା ପ୍ରାଣନାଥ ମହାବିଦ୍ୟାଳୟ ପରିସର ଏବଂ ଗୁଡୁଙ୍ଗଙ୍ଗର ଶିକ୍ଷକ ମହାସଂଘ ଇନିଷ୍ଟିଚ୍ୟୁଟ ଅଫ୍ ଏଜୁକେଶନର ପରିସର, ନିଖିଳ ଉତ୍କଳ ଶିକ୍ଷକ ମହାସଂଘ, ଭୌମନଗର ପରିସରରେ ଶୋକାକୁଳ ପରିବେଶ, କଟକସ୍ଥିତ ଶିକ୍ଷକ ମହାସଂଘର ଏଜୁଡ଼ିଶାଳ, ଓଷ୍ଟା କାର୍ଯ୍ୟାଳୟ ଏବଂ ଓଲ୍‌ଷ୍ଟା କାର୍ଯ୍ୟାଳୟ ପରିସର, ଇସକଫ ଓ ଇଫଟା କାର୍ଯ୍ୟାଳୟ ଏବଂ ବାରବାଟୀ ଷ୍ଟାଡ଼ିୟମ କ୍ଲବହାଉସ ପରିସର, ଯେଉଁଠାରେ ସ୍ୱର୍ଗତ ବରାଳ ତାଙ୍କ ଶିକ୍ଷକ ମହାସଂଘର, ଓଷ୍ଟା, ଓଲ୍‌ଷ୍ଟାର

ରାଜ୍ୟ ସମ୍ମିଳନୀ, ସର୍ବଭାରତୀୟ କଲେଜ ଶିକ୍ଷକ ସଂଘ ସମ୍ମିଳନୀ, ସର୍ବଭାରତୀୟ ଶିକ୍ଷା ଶିକ୍ଷକ ସମ୍ମିଳନୀ, ବିଶ୍ୱ ଶିକ୍ଷକ ସଂଘ ସମ୍ମିଳନୀମାନ ଅନୁଷ୍ଠିତ କରାଇଥିଲେ । ସର୍ବୋପରି ସ୍ୱର୍ଗତ ଅବନୀ ବରାଳ ଯେଉଁ ରାଜନୈତିକ ଦର୍ଶନରେ ଅନୁପ୍ରାଣିତ ହୋଇଥିଲେ ଏବଂ ଆମୃତ୍ୟୁ ସେହି ଭାରତୀୟ କମ୍ୟୁନିଷ୍ଟ ପାର୍ଟିକୁ ଗଢ଼ିତୋଳିବା ଦିଗରେ ଅହରହ ଉଦ୍ୟମ କରୁଥିଲେ ଏବଂ ତା'ର ରାଜ୍ୟ ସଂପାଦକ ଭାବରେ ଦୀର୍ଘବର୍ଷ କାର୍ଯ୍ୟ କରୁଥିଲେ, ଶିକ୍ଷକ ମହାସଂଘର ସଂଗ୍ରାମ ସହିତ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ରାଜନେତାମାନଙ୍କ ସହଯୋଗ ନେଇ ଅନେକ ସଂଗ୍ରାମରେ ବିଜୟୀ ହୋଇଥିଲେ । ରାଜ୍ୟର ସମସ୍ତ ତାଙ୍କ ସଂପର୍କରେ ଆସିଥିବା କର୍ମଚାରୀ ସଂଘ, ଶ୍ରମିକ ସଂଘ, ବିଭିନ୍ନ ଶିକ୍ଷକ ସଂଗଠନ, ଛାତ୍ର-ଶିକ୍ଷକ ସମନ୍ୱୟ ସମିତି, ବିଭିନ୍ନ ବେସରକାରୀ ସ୍ୱେଚ୍ଛାସେବୀ ସଂଗଠନଗୁଡ଼ିକ ଅତ୍ୟନ୍ତ ଶ୍ରଦ୍ଧାର ସହ ସମ୍ମିଳିତଭାବେ ଏବଂ ଭିନ୍ନଭିନ୍ନ ଭାବରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାରେ ଲାଗିଛନ୍ତି ।

ଅବନୀ ବରାଳ ଉତ୍କଳ ଜନନୀଙ୍କର ଏକ ଯୋଗଜନ୍ମା ମହନୀୟ ପୁରୁଷ, ଯିଏ ଓଡ଼ିଶାକୁ ସମଗ୍ର ଭାରତବର୍ଷରେ ଏବଂ ବିଶ୍ୱ ଦରବାରରେ ପରିଚିତ କରାଇଥିଲେ । ପ୍ରାଣନାଥ ମହାବିଦ୍ୟାଳୟର ଅଧ୍ୟାପକ ଅବନୀ ବରାଳ ସର୍ବଭାରତୀୟ କଲେଜ ଶିକ୍ଷକ ସଂଘର ସାଧାରଣ ସଂପାଦକ ଏବଂ ବିଶ୍ୱ ଶିକ୍ଷକ ସଂଘର ଉପ ସଭାପତି ଭାବରେ ଦୀର୍ଘଦିନ କାର୍ଯ୍ୟ କରିଥିବା ସମୟରେ ଓଡ଼ିଶାରେ ସର୍ବଭାରତୀୟ କଲେଜ ଶିକ୍ଷକ ସଂଘର ସମ୍ମିଳନୀ ଏବଂ ବିଶ୍ୱ ଶିକ୍ଷକ ସଂଘର ସମ୍ମିଳନୀ ବାରବାଟୀ ଷ୍ଟାଡ଼ିୟମରେ କରାଇ, ନିଖିଳ ଉତ୍କଳ ଶିକ୍ଷକ ମହାସଂଘକୁ ଏବଂ ଓଡ଼ିଶାକୁ ଦେଶ ବିଦେଶରେ ପରିଚିତ କରାଇଥିଲେ । ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ବିଶ୍ୱ ଶିକ୍ଷକ ସଂଘର ଆଫିଲିଏସନ ନେବା ଫଳରେ ଆମ ରାଜ୍ୟରେ ବହୁ ଶିକ୍ଷକ ନେତା ବିଦେଶକୁ ଯିବାର ସୁଯୋଗ ଲାଭ କରିଥିଲେ । ନିଜେ ଅବନୀ ବରାଳ ବିଶ୍ୱର ପ୍ରାୟ ୫୦ଟି ରାଷ୍ଟ୍ର ଭ୍ରମଣ କରି ସେସବୁ ଦେଶରେ ଓଡ଼ିଶାର ଶିକ୍ଷକ ସଂଗଠନକୁ ବେଶ୍ ପରିଚିତ କରାଇ ପାରିଥିଲେ ।

ଶିକ୍ଷକ ମହାସଂଘ ଗଠନ କାଳରୁ ମୁଁ ସଂପାଦକ ମଣ୍ଡଳୀର ସଦସ୍ୟତା ଲାଭ କରିଥିଲି । ୧୯୭୧ ରେ ମୁଁ ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ସାଧାରଣ ସଂପାଦକ ଭାବରେ ନିର୍ବାଚିତ ହେଲା ପରଠାରୁ ଶିକ୍ଷକ ମହାସଂଘର ସମ୍ବିଧାନ ଅନୁସାରେ

ସଂପାଦକ ମଣ୍ଡଳୀରେ ରହି ଅବନୀ ବରାଳଙ୍କ ସମସ୍ତ କାର୍ଯ୍ୟକ୍ରମରେ ସହଯୋଗ କରି ଆସିଥିଲି । ପରବର୍ତ୍ତୀ ସମୟରେ ମୁଁ ସଭାପତି ଏବଂ ଅବନୀଭାଇ ସାଧାରଣ ସଂପାଦକ ଭାବରେ ଦୀର୍ଘବର୍ଷ କାର୍ଯ୍ୟ କରିଛି ।

୧୯୭୨ରେ ଦରମାହାର ସମୀକରଣ ପାଇଁ ସଂଗଠିତ ଦୁର୍ବାର ଆନ୍ଦୋଳନରେ ସଫଳତା ଲାଭପରେ, ୧୯୬୯ ଶିକ୍ଷା ଆଇନ୍ ଅନ୍ତର୍ଭୁକ୍ତ ନିୟମାବଳୀ ପ୍ରଣୟନ ସହ ପୂର୍ଣ୍ଣ ପ୍ରତ୍ୟକ୍ଷ ବେତନ ପାଇଁ, ୧୯୭୪ରେ ସଂଗଠିତ ମହାସଂଗ୍ରାମ ଫଳରେ ୧.୪.୧୯୭୫ ଠାରୁ ପ୍ରତ୍ୟକ୍ଷ ବେତନ ପ୍ରଦାନ ପ୍ରଥା ଲାଗୁ ହୋଇଥିଲା ଏବଂ ଶିକ୍ଷା ନୀୟମାବଳୀ ପ୍ରଣୟନ ହୋଇଥିଲା । ୧୯୭୮ରେ ବେସରକାରୀ ସ୍କୁଲ/ କଲେଜ ଶିକ୍ଷକମାନଙ୍କ ପାଇଁ ପେନ୍‌ସନ, ଗ୍ରାଚ୍ୟୁଇଟି, ପ୍ରୋଭିଡେଣ୍ଟଫଣ୍ଡ-ଆଦି ତ୍ରିବିଧ ସୁଯୋଗ ପାଇଁ ଦୁର୍ବାର ଆନ୍ଦୋଳନର ଆହ୍ୱାନ ଶିକ୍ଷକ ମହାସଂଘର ସାଧାରଣ ସଂପାଦକ ଅବନୀ ବରାଳ ଦେବା ଫଳରେ ସଂଗଠିତ ହେଲା ରାଜଧାନୀରେ ମହାସମାବେଶ । ସମାବେଶକୁ ଆସୁଥିବା ବସ୍ ଓଲଟିବା ଫଳରେ ଟିକାତାଲଠାରେ ୬ଜଣ ଶିକ୍ଷକ ଶିକ୍ଷିକାଙ୍କର ଅକାଳ ବିୟୋଗ, ଅଧ୍ୟାପକ ଅବନୀ ବରାଳଙ୍କୁ ଦାରୁଣ ଆଘାତ ଦେଇଥିଲା । ପ୍ରତିବର୍ଷ ମାର୍ଚ୍ଚ ୦୯ ତାରିଖରେ ଟିକାତାଲ ଠାରେ ସହିଦ ଶିକ୍ଷକ/ଶିକ୍ଷିକାଙ୍କୁ ସ୍ମରଣ କରିବା ପାଇଁ ଶିକ୍ଷକ ମହାସଂଘ ପକ୍ଷରୁ ସ୍ମାରକୀସଭା ହୋଇ ଆସୁଛି । ପର୍ଯ୍ୟାୟକ୍ରମେ ଶିକ୍ଷକ ମହାସଂଘ ପ୍ରତି ୪ବର୍ଷରେ ଥରେ ଶିକ୍ଷା-ଶିକ୍ଷକ ସମସ୍ୟା ନେଇ ଆନ୍ଦୋଳନ କରିଥିଲା ଏବଂ ଦାବି ହାସଲ କରି ପାରିଥିଲା । ୧୯୮୪ ଓ ୧୯୮୮ ର ମହାସମର ତଥା ମହାସମାବେଶ ରାଜ୍ୟ ସରକାରଙ୍କୁ ଭୟଭୀତ କରିଥିଲା । ବିରାଟ ବାହିନୀର ସେନାପତି ଅବନୀ ବରାଳ ଅମିତ ବିକ୍ରମରେ ବିଧାନସୌଧ ଆଡ଼କୁ ଗଲାବେଳେ ସରକାରଙ୍କ ଗୁଳିଗୁଳା ବନ୍ଧୁକରେ ସୁସଜ୍ଜିତ ସୈନ୍ୟବାହିନୀ ମୁହାଁମୁହିଁ । ପି.ଏମ୍.ଜି. ଛକରେ ଓଡ଼ିଶାର ପ୍ରଖ୍ୟାତ ରାଜନେତା ବିଜୁ ପଟ୍ଟନାୟକ, ଶିବାଜୀ ପଟ୍ଟନାୟକ ମଧ୍ୟବର୍ତ୍ତୀ ସ୍ଥଳରେ ରହି ଅବନୀ ବାହିନୀକୁ ୪୩, ଭୌମନଗର ନେଇ ଯାଇଥିଲେ । ରାଜନେତାମାନଙ୍କ ଆସିବା ବିଳମ୍ୱ ହୋଇଥିଲେ ସେ ମହାସଂଗ୍ରାମରେ ଅନେକ ଶିକ୍ଷକ ଶିକ୍ଷିକା ଏବଂ ପୋଲିସଙ୍କର ଅକାଳ ବିୟୋଗ ଘଟିଥା'ନ୍ତା । ବିଚକ୍ଷଣ ରାଜନେତାଗଣ ଅବନୀ ବରାଳଙ୍କର ହିତାକାଂକ୍ଷୀ ହୋଇଥିବାରୁ ଶିକ୍ଷକମାନଙ୍କ ମଙ୍ଗଳ ଦୃଷ୍ଟେ ସରକାରଙ୍କ ଉପରେ ଚାପ ପ୍ରୟୋଗ କରି ଦାବି ହାସଲ କରିବାରେ ସହାୟକ ହୋଇଥିଲେ ।

ଅବନୀ ବରାଳ ଥିଲେ ଦୂରଦୃଷ୍ଟିସଂପନ୍ନ ବିଚକ୍ଷଣ ରାଜନେତା, ଧୀଶକ୍ତି ସଂପନ୍ନ ପ୍ରଚଣ୍ଡ ବକ୍ତା, ସାଂଗଠନିକ କୌଶଳର ଯାଦୁକାରୀ ବ୍ୟକ୍ତି । ନିର୍ଭୀକ, ଧୁରୀଣ ସେନାପତି ଭାବରେ ଯେତେଥର ମହାସଂଗ୍ରାମର ବ୍ୟୂହ ରଚନା କରିଥିଲେ ସେ ପ୍ରାୟ ସବୁଥିରେ ସଫଳ ହୋଇଥିଲେ ।

୧୯୬୯ ମସିହା ଜୁଲାଇ ମାସରେ ସଂଗଠିତ ଶିକ୍ଷକ କ୍ରିୟାନୁଷ୍ଠାନ କମିଟିର କର୍ଣ୍ଣଧାର ତ୍ରିଶାଖା ବେଲପତ୍ର ଭାବରେ ଶିକ୍ଷକମାନଙ୍କ ଦ୍ୱାରା ସମ୍ମାନିତ ହେଉଥିବା ନେତୃତ୍ୱ ଶିକ୍ଷକଗୌରବ ବନମାଳୀ ବ୍ରହ୍ମଚାରୀ, କୈଳାସଚନ୍ଦ୍ର ମହାପାତ୍ର ଏବଂ ଶେଷ ଶାଖା ବିଶ୍ୱବିଦିତ ଏବଂ ବିଶ୍ୱବନ୍ଦିତ ବ୍ୟକ୍ତି ଅବନୀ ବରାଳଙ୍କ ମହାପ୍ରୟାଣ, ରାଜ୍ୟର ଶିକ୍ଷକ କର୍ମଚାରୀମାନଙ୍କୁ ହତଚକିତ କରିଛି । ଜୀବନର ଶେଷ ଅବସ୍ଥାରେ ତାଙ୍କ ହାତଗଢ଼ା ମହାସଂଘର ପୂର୍ଣ୍ଣାଙ୍ଗ ଅବୟବର ସ୍ୱପ୍ନ ଦେଖିଥିଲେ । ଏହି ଅଭିଳାଷ ସେ ଯାଜପୁର ଜିଲ୍ଲାର ପାଣିକୋଇଲି ସଭାରେ ଆତ୍ମପ୍ରକାଶ କରିଥିଲେ । ଆସନ୍ତୁ ତାଙ୍କର ଅଧୁରା ସ୍ୱପ୍ନକୁ ସାକାର କରିବାପାଇଁ ଐକ୍ୟବଦ୍ଧ ସଂଗ୍ରାମ ଅଭିପ୍ସା ନେଇ ଏକତ୍ରିତ ହେବା । ତାଙ୍କର ପରିବାର ବର୍ଗଙ୍କୁ ବିଶ୍ୱନିୟନ୍ତା ସହାୟ ହୁଅନ୍ତୁ, ଏତିକି କାମନା କରୁଛି ।

* * *

* ପ୍ରାକ୍ତନ ସଭାପତି,
ଶିକ୍ଷକ ମହାସଂଘ
(ମଙ୍ଗଳପୁର, ଯାଜପୁର )

# ଚିରନିଦ୍ରାରେ କ୍ରାନ୍ତିର ମହାନାୟକ

✱ ଶ୍ରୀ ସନାତନ ଜେନା

ଓଡ଼ିଶା ଶିକ୍ଷକ ମହାସଂଘର ଦୁର୍ଦ୍ଧର୍ଷ ସେନାପତି, ବିଶିଷ୍ଟ ସମାଜସେବୀ, ବାମପନ୍ଥୀ ଆନ୍ଦୋଳନର ଅଗ୍ର ପୁରୋଧା, ସ୍ୱାଧୀନଚିନ୍ତକ, ସୁସାହିତ୍ୟିକ, ଗ୍ରନ୍ଥକାର, ମୁକ୍ତ ଜୀବନବୋଧର ମଣିଷ ତଥା ସ୍ୱପ୍ନ, ସଂକଳ୍ପ ଓ ସଂଗ୍ରାମର ପ୍ରମୂର୍ତ୍ତ ପୁରୁଷ ଅବନୀ ବରାଳ ଚିରନିଦ୍ରାରେ ଶୋଇଗଲେ । ଛାଡ଼ି ଦେଇଗଲେ ଜୀବନ ଯନ୍ତ୍ରଣାରେ ଅହରହ କ୍ଷତାକ୍ତ ହେଉଥିବା ଓଡ଼ିଶାର ଅଗଣିତ ଶିକ୍ଷକ / ଶିକ୍ଷିକା ଓ ନିରନ୍ନ, ବୁଭୁକ୍ଷୁ, ଦୁଃଖୀ ଓ ଖଟିଖିଆ ମଣିଷ ସମାଜକୁ । ଏମାନେ ଏବେ ବେସାହାରା ଓ ଅସହାୟ । ଏଇ ସାଧାରଣ ମଣିଷମାନଙ୍କର ସେ ଥିଲେ ଜୀବନର ସାଥୀ, ଦରଦୀ ବନ୍ଧୁ, ସହୋଦର, ସବୁକିଛି । ଯଦିଓ ସେ ଜଣେ ମାର୍କସବାଦୀ, ତଥାପି ଗାନ୍ଧିଜୀଙ୍କ ପରି ତାଙ୍କ ତାରକା ମନ୍ତ୍ରଟି ହେଲା, ''ଆପଣ ଯେଉଁ ଦରିଦ୍ରତମ ଓ ଦୁର୍ବଳତମ ଲୋକଙ୍କୁ ଦେଖୁଛନ୍ତି, ଆପଣଙ୍କ କାର୍ଯ୍ୟଧାରା ତା'ର କିଛି ଉପକାର କରି ପାରିବକି ?'' ତେଣୁ ଗାନ୍ଧିଜୀଙ୍କ ଆଶ୍ରମ ଭଜନ ଅବନୀ ବରାଳଙ୍କ ଜୀବନରେ ସର୍ବଦା ଝଙ୍କୃତ ।

''ନତ୍ୱହଂ କାମୟେ ରାଜ୍ୟମ୍
ନ ସ୍ୱର୍ଗଂ ନ ପୁର୍ନଭବ୍ୱାମ
କାମୟେ ଦୁଃଖ ତିପ୍ତାନାମ୍
ପ୍ରାଣୀନାମ ଆର୍ତ୍ତ ନାଶନମ୍ ।''

ବିଶିଷ୍ଟ ଦାର୍ଶନିକ ଜର୍ଜ ସାନ୍ତାୟନ କହନ୍ତି, ''ଜୀବନ ଆଉ ମୃତ୍ୟୁର କିଛି ଉପଚାର ନାହିଁ । ଏଣୁ ଏ ଦୁଇଟିର ମଧ୍ୟବର୍ତ୍ତୀ ସମୟକୁ ଉପଯୋଗ କରାଯିବା ବୁଦ୍ଧିମାନର କାମ ।'' ଅବନୀ ବରାଳ ଏ ଉକ୍ତିର ଯଥାର୍ଥତା ନିଜ ଜୀବନରେ ଶତ ପ୍ରତିଶତ ରୂପାୟିତ କରିଛନ୍ତି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ଯଶୋଦେହରେ ତାଙ୍କର ମୃତ୍ୟୁ ନାହିଁ । ସେ ମୃତ୍ୟୁଞ୍ଜୟୀ । ଯଦି କେବେ ସାଂପ୍ରତିକ ଓଡ଼ିଶାର ଶିକ୍ଷକ, ଶିକ୍ଷା ଓ ଶିକ୍ଷାର୍ଥୀ ସମସ୍ୟାର ଇତିହାସ ଲିଖିତ ହୁଏ, ତେବେ ପ୍ରତିଟି ପୃଷ୍ଠାରେ ଅବନୀ ବରାଳଙ୍କ ସ୍ଥିତି ଓ ସ୍ୱାକ୍ଷରକୁ କେହି ଅସ୍ୱୀକାର କରିପାରିବେ ନାହିଁ । ସେ ତାଙ୍କ କର୍ମରେ ବଞ୍ଚିବେ ଓ ସ୍ମୃତିରେ ଜିଇଁ ରହିବେ, ଅନ୍ତତଃ ଆମମାନଙ୍କ ପାଇଁ, ଶୋଷିତ ଓ ଶାସିତବର୍ଗର ମଣିଷ ପାଇଁ । ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ଏକାଠି ହୋଇ ଲଢ଼ିବାକୁ ଯେଉଁ କୃଷୀୟ ଚେତନାଟିକକ ଆମ ଭିତରେ ସେ ଭରି ଦେଉଥିଲେ । ତା'ର ଅପମୃତ୍ୟୁ ନ ଘଟିଲେ, ତାହାହିଁ ହେବ

ତାଙ୍କ ପ୍ରତି ଶ୍ରେଷ୍ଠ ସମ୍ମାନ । ସେଇଥିପାଇଁ ଓଡ଼ିଶାର ଅନ୍ୟତମ ବରପୁତ୍ର, ଦକ୍ଷ ପ୍ରଶାସକ ଓ ସୁନାମଧନ୍ୟ ଲେଖକ ଡ. ସୀତାକାନ୍ତ ମହାପାତ୍ର ସେଇ ବିପ୍ଳବୀ ଚେତନାର ମୃତ୍ୟୁ ପାଇଁ ତାଙ୍କ କବିତା "The Death of Srikrushna"ରେ ଆମ ସମସ୍ତଙ୍କୁ ସତର୍କ କରି ଯାଇଛନ୍ତି ।

"No more the Brothers will quarrel,
No more will hearts break,
No more the condemned souls
Will cry for salvation,
Husbands of Gopints will sleep in peace,
The great fire conflagration of unprecedented pleasure leaped up at the sky,
The brass band started to play,
An age of gulf-consciousness ended."

ଶେଷରେ ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ଏ ଅଧମର କୋଟି କୋଟି ପ୍ରଣାମ ।

* * *

* ଉପଦେଷ୍ଟା, ଓଲ୍ଡଷ୍ଟା
ସା.ପୋ.- ସାଇଁକୁଳା
ମୟୂରଭଞ୍ଜ- ୭୫୭୧୦୨

# ଯୁଗବିପ୍ଳବୀର ମହାବିଶ୍ରାମ

✱ ଶ୍ରୀ ଗୋଲକବିହାରୀ ସାହୁ

ଶିଆଳି ଲତାରେ ଶରବିଦ୍ଧ ଦୁଃଖ ଯନ୍ତ୍ରଣାଗ୍ରସ୍ତ ଶ୍ରୀକୃଷ୍ଣଙ୍କୁ ପ୍ରଶ୍ନ କରିଥିଲା ଭୀତତ୍ରସ୍ତ ଭାବରେ, ଅଶ୍ରୁ ଛଳଛଳ ଆଖିରେ କୋହଭରା କଣ୍ଠରେ, "ହେ ମହାନ ବିପ୍ଳବୀ, କ୍ରାନ୍ତିକାରୀ ମହାନାୟକ, ଆପଣ କାହିଁକି ମର୍ତ୍ତ୍ୟମଣ୍ଡଳରୁ ବିଦାୟ ନେଲେ ?" ଚିରରହସ୍ୟମୟ ବେଦନାଶିକ୍ତ ଶ୍ରୀକୃଷ୍ଣ ହାସ୍ୟଭରା ଗଳାରେ ଉତ୍ତର ଦେଲେ, "ବିପ୍ଳବ ଯୁଗର ଅବସାନ ଘଟିଛି । ଆଉ ରହିବାର ଆବଶ୍ୟକତା ନାହିଁ ।" ସମଗ୍ର ଶିକ୍ଷକ ଜାତିର ତ୍ରାଣକର୍ତ୍ତା, ଦଶନ୍ଧି ଦଶନ୍ଧି ଉତ୍କଳୀୟ ପରମ୍ପରା, ମହାଭାରତୀୟ ଭାବଧାରରେ ନିୟନ୍ତ୍ରିତ କରିଥିବା ଶିକ୍ଷା ବ୍ୟବସ୍ଥା, ମେହନତୀ ଖଟିଖିଆ ମଣିଷର ପ୍ରଥପ୍ରଦର୍ଶକ, ସାମ୍ୟବାଦୀ ରାଜନେତା, ବିଶିଷ୍ଟ ଶିକ୍ଷାବିତ୍, ବିଶ୍ୱସ୍ତରୀୟ ଶିକ୍ଷକ ନେତା ଆମ ଗହଣରେ ଆଉ ନାହାଁନ୍ତି । ସେ ମହାନିଦ୍ରାରେ ବିଶ୍ରାମ ନେଇଗଲେ ଅନନ୍ତକାଳ ପାଇଁ । ଯୁଗପୁରୁଷ ଦ୍ୱାରାକାଧିପତି କୃଷ୍ଣଙ୍କର ଜାରାଶବରକୁ ଦେଇଥିବା ଉତ୍ତର, ତାଙ୍କର ଅନୁଗାମୀମାନଙ୍କ ପ୍ରତି ଅବନୀ ବରାଳଙ୍କର ଠିକ୍ ସେଇ ଏକା ଉତ୍ତର ଥିଲା–ମିଳିତ ଆନ୍ଦୋଳନ ଯୁଗର ସମାପ୍ତି ଘଟିଛି । ମୋର ଆଉ କୌଣସି ଆବଶ୍ୟକତା ନାହିଁ । ହକ୍ ଯୋର କରି ଆଦାୟ କରିବା ପରିବର୍ତ୍ତେ ଅନୁକମ୍ପା, ଅନୁଗ୍ରହ ମାଗିବାର ଯୁଗ ଆସି ଯାଇଛି । । ତେଣୁ ଆଉ ରହିବାର ନାହିଁ । ପରପିଢ଼ିର ଏହିଭଳି, ଏକ ଦାରୁଣ ବିଚାରଧାରା ତାଙ୍କର ହୃଦୟତନ୍ତ୍ରୀକୁ ପ୍ରତିଟି ମୁହୂର୍ତ୍ତରେ ଖିନ୍‌ଭିନ୍ କରୁଥିଲା । ତେଣୁ ସେ ଆଉ ରହିଥା'ନ୍ତେ କାହିଁକି, ଏହା ଥିଲା ଇଚ୍ଛାମୃତ୍ୟୁ ।

୧୯୬୯ ମସିହା । ପ୍ରାଥମିକ, ମଧ୍ୟ ବିଦ୍ୟାଳୟ, ମାଧ୍ୟମିକ ଓ କଲେଜ, ବିଶ୍ୱବିଦ୍ୟାଳୟସ୍ତରର ଶିକ୍ଷକ ସଂଗଠନମାନ ଗଠିତ ହୋଇ ସାରିଥାଏ; ମାତ୍ର ଶିକ୍ଷା ଓ ଶିକ୍ଷକ ଆନ୍ଦୋଳନ କଥା କେହି ବି ଚିନ୍ତା କରିପାରୁ ନ ଥିଲେ । ସେତିକିବେଳେ ଅବନୀ ବରାଳ ସବୁ ସଂଗଠନମାନଙ୍କୁ ଏକତ୍ରିତ କରି ଏକ ସମନ୍ୱୟ ସମିତି ଗଠନ କଲେ; ମାତ୍ର ସର୍ବାଧିକ ଶିକ୍ଷକ ସଭ୍ୟ ଥିବା ପ୍ରାଥମିକ ଶିକ୍ଷକ ସଂଗଠନ ଏଥିରୁ ଓହରି ଗଲା । ବେସରକାରୀ କଲେଜ, ହାଇସ୍କୁଲ,ମାଇନର ସ୍କୁଲ ଶିକ୍ଷକ ସଂଗଠନକୁ ନେଇ ଗଠିତ ହେଲା "ନିଖିଳ ଉତ୍କଳ ଶିକ୍ଷକ ମହାସଂଘ" । ଯାହାର ପ୍ରତିଷ୍ଠାତା ଥିଲେ ବିଶିଷ୍ଟ ଗାନ୍ଧିବାଦୀ ଶିକ୍ଷକନେତା ଶିକ୍ଷକଗୌରବ ବନମାଳୀ ବ୍ରହ୍ମଚାରୀ, ସାମ୍ୟବାଦୀ ଶିକ୍ଷକ ନେତା ଅବନୀ ବରାଳ ଓ କୈଳାସ ମହାପାତ୍ର ।

ହକ୍‌ପାଇଁ ଚାଲିଲା ଆନ୍ଦୋଳନ । କ୍ରାନ୍ତିକାରୀ ଆନ୍ଦୋଳନ । ହାସଲ ହେଲା ସିଧାସଳଖ ଦରମା ପ୍ରାପ୍ତି, ଶିକ୍ଷା ଆଇନ୍ । ଏହି ଶିକ୍ଷା ଆଇନ୍ ଅନ୍ତର୍ଗତ ସମସ୍ତ ନିୟମାବଳୀ । ଗୋଟିଏ ପୋଷ୍ଟକାର୍ଡ଼ ଚିଠିରେ ଲକ୍ଷ ଲକ୍ଷ ଶିକ୍ଷକ ଶିକ୍ଷିକା ହାଜର ହେଲେ ରାଜଧାନୀ ଭୁବନେଶ୍ୱରରେ । ଅଭୂତପୂର୍ବ ଥିଲା ସେ ଆନ୍ଦୋଳନ । ଧୀରେ ଛାତ୍ରଛାତ୍ରୀ ଓ ଅଭିଭାବକମାନେ ଏଥିରେ ସାମିଲ୍ ହେଲେ । ବୁଦ୍ଧିଜୀବୀମାନେ ମଧ୍ୟ ସାମିଲ ହେଲେ । ଏହା କ୍ରମେ ଗଣ ଆନ୍ଦୋଳନରେ ପରିଣତ ହୋଇଗଲା । ସମଗ୍ର ବିଶ୍ୱରେ ଏହା ଏକ ଦୃଷ୍ଟାନ୍ତ ପାଲଟିଗଲା । କେତେ ଦେଶୀ ବିଦେଶୀ ଗବେଷକ ଏହି ଆନ୍ଦୋଳନର ଧାରା ଓ ସଫଳତା ଉପରେ ଗବେଷଣା କରିବାକୁ ଲାଗିଲେ । କାଳକ୍ରମେ ଅବନୀ ବରାଳ ପାଲଟିଗଲେ ଏକ ଅନୁଷ୍ଠାନ ।

ଶିକ୍ଷକ ମହାସଂଘ କେବଳ ଶିକ୍ଷା ଓ ଶିକ୍ଷକମାନଙ୍କ ସ୍ୱାର୍ଥପାଇଁ ଲଢ଼େଇ କରୁ ନ ଥିଲା, ବରଂ ସାମଗ୍ରିକ ଭାବେ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ସଂସ୍କାର ଆଣିବା ପାଇଁ ଆନ୍ଦୋଳନ କରୁଥିଲା । ତେଣୁ ଏହା ଧୀରେ ଧୀରେ ଗଣ ଆନ୍ଦୋଳରେ ପରିଣତ ହୋଇଯାଇଥିଲା । ଏହାର ନେତାମାନେ ଥିଲେ ଅତ୍ୟନ୍ତ ଦକ୍ଷ । ଜାତୀୟ, ଆନ୍ତର୍ଜାତୀୟସ୍ତରରେ ଘଟୁଥିବା ପରିବର୍ତ୍ତନକୁ ନେଇ ସଭା ସମିତିରେ ବକ୍ତୃତା ଦେଉଥିଲେ । ସେହି ଆଗଧାଡ଼ିର ନେତାଙ୍କ ମଧ୍ୟରୁ ବହୁ ସାଥୀ ଆଗରୁ ଛାଡ଼ି ଯାଇଥିଲେ ଓ ଏବେ ତାଙ୍କର ପାଳି ପଡ଼ିଲା । ତାଙ୍କର ଦେହାବସାନରେ କ୍ରାନ୍ତିକାରୀ ବିପ୍ଳବ ଯୁଗର ଅବସାନ ଘଟିଲା ।

ମନେପଡ଼େ ୧୯୭୧ ମସିହା ବେଳର କଥା । ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡରେ ଶିକ୍ଷକମାନଙ୍କର ର୍‍ୟାଲି ଆରମ୍ଭ ହେଉଥିଲା । ଏବର ଇନ୍ଦିରାଗାନ୍ଧୀ ପାର୍କ ସେତେବେଳେ ଥିଲା ପ୍ୟାରେଡ଼ ଗ୍ରାଉଣ୍ଡ । ଠିକ୍ ସଚିବାଳୟ ସାମନା । ହାତ ଗଣତି କେତେ ଶିକ୍ଷକ । ସ୍ଲୋଗାନ "ଆମର ଦାବି- ପୂରଣ ହେଉ" - ଏତିକି କହିବା ପାଇଁ ଶିକ୍ଷକମାନଙ୍କର ସାହସ ନ ଥିଲା । ଯଦି ପୋଲିସ୍ ଭ୍ୟାନଟିଏ ର୍‍ୟାଲି ପାଖଦେଇ ଚାଲିଯାଉଥିଲା କିଛି ଶିକ୍ଷକ ଧାଡ଼ିଛାଡ଼ି ପଳାଇ ଯାଉଥିଲେ । ଉଚ୍ଚ ସ୍ୱରରେ ସ୍ଲୋଗାନ ଦେଉ ନ ଥିଲେ । ପରେ ପ୍ୟାରେଡ଼ ଗ୍ରାଉଣ୍ଡରେ ଏକଜୁଟ୍ ହୋଇ ପ୍ରତିବାଦ ସଭାରେ ଯୋଗ ଦେଉଥିଲେ । ସେହି ଯୁଗପୁରୁଷ, କ୍ରାନ୍ତିକାରୀ ନେତା ଅବନୀ ବରାଳଙ୍କର ସାହସିକ ଆହ୍ୱାନ ସେମାନଙ୍କୁ ତେଜିୟାନ କଲା । ପୁଲିସ୍ କର୍ଡ଼ନ ଭାଙ୍ଗିଲେ, ଲୁହାବୁହା ଗ୍ୟାସ୍‌କୁ ବେଖାତିର କଲେ ଓ ଓଡ଼ିଶା ବିଧାନ ସଭାକୁ ଦଖଲ କରିନେଲେ । ଅବିସ୍ମରଣୀୟ ରହିବ ତାଙ୍କର ଆନ୍ଦୋଳନର ତରିକା ।

ଶିକ୍ଷକ ମହାସଂଘ ଦ୍ୱାରା ଅବନୀ ବରାଳଙ୍କ ନେତୃତ୍ୱରେ କେତେ ଯେ ଆନ୍ଦୋଳନ ହୋଇଛି, ସେ ସବୁ ଅବିସ୍ମରଣୀୟ । ସେଥିମଧ୍ୟରୁ ଗୋଟିଏ ଘଟଣାର

ଅବତାରଣା କରୁଛି ମାତ୍ର । କଂଗ୍ରେସ ସରକାର ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱରେ ଚାଲିଥାଏ । ଏକ ବଡ଼ ଧରଣର ଶିକ୍ଷକ ସମାବେଶ ପାଇଁ ଓଡ଼ିଶାର ୩୧୪ ବ୍ଲକରେ ସଭା କରାଗଲା । ଲକ୍ଷାଧିକ ଶିକ୍ଷକ ଶିକ୍ଷିକାମାନଙ୍କର ସମାବେଶ ହେବ । ଆନ୍ଦୋଳନ ଦିନ ଶିକ୍ଷକ ମହାସଂଘର ସବୁ ସାଧାରଣ ସଭ୍ୟମାନଙ୍କ ଉପରେ ୧୪୪ ଧାର ଜାରି କରାଗଲା । ସରକାର ଭାବିଲେ ସମାବେଶ ଭଣ୍ଡୁର ହୋଇଯିବ; ମାତ୍ର ଶିକ୍ଷକମାନେ ଲୁଚିଛପି ଭିନ୍ନ ଭିନ୍ନ ଉପାୟରେ ଭୁବନେଶ୍ୱରରେ ପହଁଞ୍ଚିଗଲେ । ସଚିବାଳୟ ଘେରାଉ ଦିନ ୮ଟା ବେଳକୁ । ଭୁବନେଶ୍ୱର ରାଜରାସ୍ତାକୁ ଯୁଆଡ଼େ ଚାହିଁବ କେବଳ ଶିକ୍ଷକ । ମନେଅଛି ବିଜୁ ପଟ୍ଟନାୟକ, ନନ୍ଦିନୀ ଶତପଥି, ଲୋକନାଥ ଚୌଧୁରୀ, ଶିବାଜୀ ପଟ୍ଟନାୟକ, ବିଜୟ ମହାପାତ୍ର, ଶ୍ରୀକାନ୍ତ ଜେନା, ନଳିନୀ ମହାନ୍ତି ଆଦି ବହୁ ନେତା ରେଲଷ୍ଟେସନରୁ ପି.ଏମ୍.ଜି ପର୍ଯ୍ୟନ୍ତ ରାଲିକୁ ଆଣିଲେ । ପୋଲିସ୍ ହଟିଗଲେ । ସରକାର ମାନିଗଲେ ଶିକ୍ଷକମାନଙ୍କର ଦାବି । ଶାନ୍ତିପୂର୍ଣ୍ଣ ଭାବରେ ଶିକ୍ଷକମାନେ ୪୩, ଭୌମନଗର, ଶିକ୍ଷକ ମହାସଂଘ ଅଫିସକୁ ଚାଲିଗଲେ । ଏ କରିସ୍ମା ସେହି କ୍ରାନ୍ତିକାରୀ ନେତାଙ୍କ ପାଇଁ ସମ୍ଭବ ହୋଇଥିଲା ।

ଶିକ୍ଷକ ମହାସଂଘର ଇତିହାସ ଲେଖିଲେ ଗୋଟିଏ ମହାଭାରତ ହେବ । ଏ ମହାଭାରତର ନାୟକ ସେହି ଯୁଗପୁରୁଷ ଅବନୀ ବରାଳ । ୧୯୭୧ ରୁ ୨୦୧୩ ମଧରେ ମହାସଂଘ କେବଳ ଶିକ୍ଷା ଓ ଶିକ୍ଷକ/ଶିକ୍ଷିକା ଆନ୍ଦୋଳନ ପାଇଁ ଲଢ଼େଇ କରିନାହିଁ, କେତେବେଳେ ଫାଶୀବାଦ ବିରୁଦ୍ଧରେ ଲଢ଼େଇ କରିଛି ତ କେତେବେଳେ ଶାନ୍ତି ପାଇଁ ଓ ପରମାଣୁ ଅସ୍ତ୍ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି । ହୀରୋସୀମା ନାଗାସାକି ଦିବସ ପାଳନ କରି ସମଗ୍ର ରାଜ୍ୟରେ ସଭା ସମିତି କରି ଶାନ୍ତିବାର୍ତ୍ତା ପ୍ରଚାର କରିଛି । ବାତ୍ୟା ଓ ବନ୍ୟାବେଳେ ବନମାଳୀ ବ୍ରହ୍ମଚାରୀ ଓ ଅବନୀ ବରାଳଙ୍କ ନେତୃତ୍ୱରେ ରିଲିଫ ଓ ଛାତ୍ରଛାତ୍ରୀଙ୍କ ଥଇଥାନ କାର୍ଯ୍ୟ ଚାଲେ । ରାଜ୍ୟ ତଥା ଦେଶ ବିଦେଶରୁ ଶିକ୍ଷକ ସଂଗଠନମାନେ ଆଦାୟକରି ରିଲିଫ ପଠାଇଥା'ନ୍ତି । କେଉଁଠି ପୋଷାକ ବଣ୍ଟନ ତ କେଉଁଠି ଶୁଖିଲା ଖାଦ୍ୟ ଓ ଅତି ଉତ୍କଟ ସ୍ଥାନରେ ରନ୍ଧାଖାଦ୍ୟ ମଧ ଦିଆଯାଇଥାଏ । ଛାତ୍ରଛାତ୍ରୀମାନଙ୍କୁ ପାଠ୍ୟୋପକରଣ ବଣ୍ଟନ ଶିକ୍ଷକ ମହାସଂଘର ପ୍ରମୁଖ କାର୍ଯ୍ୟ ଥିଲା । ବନ୍ୟା, ବାତ୍ୟା ଓ ଦୁର୍ଭିକ୍ଷର ବନ୍ଧୁ ଉତ୍କଳମଣିଙ୍କ ଜନ୍ମ ଦିବସକୁ ପ୍ରତିବର୍ଷ ପାଳନ କରିବା ସହିତ ୧୯୭୭ରେ ବର୍ଷବ୍ୟାପୀ ଗୋପବନ୍ଧୁ ଶତବାର୍ଷିକୀ ଜୟନ୍ତୀ ପାଳନ କରାଯାଇ ସମଗ୍ର ରାଜ୍ୟରେ ହଜାର ହଜାର ସାଧାରଣ ସଭା କରାଯାଇ ଗୋପବନ୍ଧୁଙ୍କ ପ୍ରବର୍ତ୍ତିତ ଶିକ୍ଷା ଓ ଶିକ୍ଷା ପ୍ରଣାଳୀ ସହିତ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହେବାପାଇଁ ଶିକ୍ଷକ, ଛାତ୍ରଛାତ୍ରୀ ତଥା ଜନସମୁଦାୟଙ୍କୁ ଆହ୍ୱାନ ଦିଆଯାଇଥିଲା । ଏଭଳି ପ୍ରେରଣାର ଉତ୍ସ ଥିଲେ ଏହି ଅବନୀ ବରାଳ ।

ବର୍ତ୍ତମାନ ପ୍ରଚଳିତ ଶିକ୍ଷାନୀତି ଉପରେ ଆଲୋଚନା ପାଇଁ ଭାରତ ସରକାରଙ୍କ (Challange of Education) 'ଶିକ୍ଷାର ଆହ୍ୱାନ' ଉପରେ ଶିକ୍ଷକ ମହାସଂଘ ଜିଲ୍ଲାରୁ ରାଜ୍ୟ ପର୍ଯ୍ୟନ୍ତ ଶହଶହ ଆଲୋଚନା ଚକ୍ର ଓ ବିତର୍କ କରାଇ ତାହାର ନିର୍ଯ୍ୟାସ ଭାରତ ସରକାରଙ୍କୁ ସୁପାରିଶ କରିବାରେ ଶିକ୍ଷକ ମହାସଂଘର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ଏହା ଥିଲା ଅବନୀ ଭାଇଙ୍କ ସାଂଗଠନିକ ଶକ୍ତି ।

ଶିକ୍ଷା ସଚେତନତା ପାଇଁ ମିଳିତ ଜାତିସଂଘର UNISCO ପକ୍ଷରୁ ଦିଆଯାଇଥିବା ଆହ୍ୱାନ ଅନନ୍ୟ ଶିକ୍ଷକନେତା ଅବନୀ ବରାଳ ଓଡ଼ିଶାରେ ସହରଠାରୁ ପୁରପଲ୍ଲୀ ପର୍ଯ୍ୟନ୍ତ ମାସାଧିକକାଳ ପରିଚାଳନା କରିଥିଲେ । ବାରବାଟୀ ଷ୍ଟାଡ଼ିୟମର କ୍ଲବ ହାଉସ୍‌ରେ ଏହି ଜ୍ୟୋତି ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ପ୍ରବାଦପୁରୁଷ ବିଜୁପଟ୍ଟନାୟକ ଅବନୀ ବରାଳଙ୍କ ହାତକୁ ଟେକି ଦେଇଥିଲେ । ଏହାର ସଫଳତା ଏତେ ଅଧିକ ଥିଲା ଯେ ଏହାକୁ ଜାତିସଂଘ ସାଧାରଣ ପରିଷଦରେ ସବୁଦାୟ ଭିଡ଼ିଓ ରେକର୍ଡ଼ିଂକୁ ଦେଖିଥିଲେ । ତାଙ୍କ ନେତୃତ୍ୱର ପଟାନ୍ତର ନ ଥିଲା । ତାଙ୍କ ସହିତ ମୋର ସାଂଗଠନିକ ସମ୍ପର୍କ ଯେତିକି ଥିଲା ବ୍ୟକ୍ତିଗତସ୍ତରରେ ସମ୍ପର୍କ ଆହୁରି ସୁଦୃଢ଼ ଥିଲା । ଅନେକବାର ରାଜନଗର, ପଟ୍ଟାମୁଣ୍ଡାଇ ଅଞ୍ଚଳ ପ୍ରୋଗ୍ରାମରେ ଆସିଲାବେଳେ ଘରକୁ ଆସନ୍ତି । ମୁଠିଏ ଖାଇ ଖୁବ୍ ଶାନ୍ତି ଅନୁଭବ କରନ୍ତି । ମୁଁ ମହାସଂଘର କାର୍ଯ୍ୟକାରିଣୀର କୌଣସି ପଦପଦବୀରେ ନ ଥିବା ବେଳେ ମଧ୍ୟ ମୋତେ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବୈଠକରେ ବସିବାକୁ ସୁଯୋଗ ଦେଇଥିଲେ । ମୁଁ ତାଙ୍କ ସହ କିଛି ଅନ୍ତରଙ୍ଗ ମୁହୂର୍ତ୍ତ ବିତାଇ ଥିବାରୁ ନିଜକୁ ଧନ୍ୟ ମନେ କରୁଛି । ସେ ମୋ ପ୍ରାତଃ ସ୍ମରଣୀୟ ଥିଲେ ଓ ରହିବେ ମଧ୍ୟ । ପ୍ରତ୍ୟେକ ଶିକ୍ଷକଙ୍କୁ ଜଣେ ନେତାଭାବରେ, ସାହସୀ ସୁବକ୍ତା ଭାବରେ ଗଢ଼ିବାକୁ ଚାହୁଁଥିଲେ । ଆଜି ସେ ମହାବିଶ୍ରାମରେ । ଦିଶାହୀନ ହୋଇ ଯାଇଛି ଶିକ୍ଷକମାନଙ୍କର ଭବିଷ୍ୟତ । ତାଙ୍କ ପରିବାର ବର୍ଗଙ୍କୁ ଓ ସେମାନଙ୍କ ସହିତ ଶିକ୍ଷକ ମହାସଂଘର ସମସ୍ତ ସାଥୀମାନଙ୍କୁ ସହିନେବାର ଶକ୍ତି ଈଶ୍ୱର ଦିଅନ୍ତୁ । ଶେଷରେ ତାଙ୍କର ଅମର ଆତ୍ମାର ସଦଗତି ପ୍ରାର୍ଥନା କରୁଛି ।

* * *

ପ୍ରାକ୍ତନ ସଭାପତି, ଓଲ୍‌ଷ୍ଟା
ସା.ପୋ.- ମଦନପୁର, କେନ୍ଦ୍ରାପଡ଼ା

# ଅପୂରଣୀୟ ଶୂନ୍ୟତା

✸ ଶ୍ରୀ ଶ୍ୟାମସୁନ୍ଦର ତ୍ରିପାଠୀ

ହେ ଗୁରୁଦେବ, ଭୀମକର୍ମା, ବୀରଧର, ଯଶସ୍ୱୀ, ଗୁଣିନ୍ଦ୍ର ଗୁଣଜ୍ଞ, ସ୍ଥିତପ୍ରଜ୍ଞ, ଜ୍ଞାନ ବାରିଧିର ରତ୍ନ, ଭାରତର ବରପୁତ୍ର, ସାହିତ୍ୟ ସାଧକ, ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ, ଶିକ୍ଷକ ଜାତିର ଗର୍ବ ଓ ଗୌରବ, ଆଜିର ଦୁଃଖଦ ମୁହୂର୍ତ୍ତରେ ମୋର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ସହ କୋଟି କୋଟି ପ୍ରଣାମ ।

ଆପଣଙ୍କ ବିଷୟରେ ବର୍ଣ୍ଣନା କରିବା ମୋ ପାଇଁ ଏକ ଧୃଷ୍ଟତା ହେଲେ ମଧ୍ୟ ଦୁଇପଦ ଲେଖିବାକୁ ପରିସ୍ଥିତି ବାଧ୍ୟ କରୁଛି । ୧୯୬୩ ମସିହାରେ ଆପଣଙ୍କ ସହିତ ସାକ୍ଷାତ ଦିନଠାରୁ ଦୀର୍ଘ ୫୦ ବର୍ଷ ସଂପର୍କରେ ଆଜି ଶୂନ୍ୟତା ସୃଷ୍ଟି ହୋଇଛି । କଲେଜ (ଖୋର୍ଦ୍ଧା କଲେଜ) ଛାତ୍ର ଜୀବନରୁ କର୍ମମୟ ଜୀବନ ପର୍ଯ୍ୟନ୍ତ ଆପଣ ଥିଲେ ମୋର ଦିଗ୍‌ଦର୍ଶକ । ସାଂଗଠନିକ ନେତୃତ୍ୱର ଆପଣ ଥିଲେ ମୋର ପ୍ରେରଣାର ଉତ୍ସ ।

୧୯୩୫ ମସିହା ଜୁନ ମାସର ଏକ ଶୁଭବେଳାରେ ଜନ୍ମ ଦେଇଥିବା ଶିଶୁ ସନ୍ତାନଟିର ୨୦୧୩ ମସିହା ନଭେମ୍ବର ମାସ ୭ ତାରିଖ 'ରାମନାମ ସତ୍ୟ ହେ' ପର୍ଯ୍ୟନ୍ତ ଦୀର୍ଘ ୭୮ ବର୍ଷର ଘଟଣାବହୁଳ ଜୀବନଯାତ୍ରାର ସମାପ୍ତି ଘଟିଛି ।

'ଜାତସ୍ୟହି ଧ୍ରୁବୋ, ମୃତ୍ୟୁ ଧ୍ରୁବମ୍ ମୃତସ୍ୟଚ ....'

''କ୍ଷଣ ଭଙ୍ଗୁର ଏ ଜଗତରେ ସର୍ବ ଅଟେ ଅଳିକ,

ଆସିଲେ ଯିବାକୁ ପଡ଼ିବ ସତ୍ୟ ଅବଧାରିତ ।'' ସମୟର ପ୍ରବହମାନ ସ୍ରୋତ ନିରନ୍ତର ଗଡ଼ିଚାଲେ ତା' ବାଟରେ । ବ୍ୟକ୍ତିର କର୍ମମୟ ଜୀବନ ଗଢ଼ି ଉଠେ ଏକ ସୀମିତ ସମୟ ମଧ୍ୟରେ । ଦୀର୍ଘ ଜୀବନଯାତ୍ରା ପଥରେ ଆସିଥାଏ ବହୁ ଘାତ ପ୍ରତିଘାତ । 'କର୍ମଣ୍ୟେ ବାଧିକାରସ୍ତୁ ମା ଫଳେଷୁ କଦାଚନ'– ମହତ ବାଣୀକୁ ଜୀବନର ଆଦର୍ଶରୂପେ ଗ୍ରହଣ କରି, ଯେ ଜୀବନପଥକୁ ଅତିକ୍ରମ କରିଚାଲେ ତା'ର ଜୀବନ ହୁଏ ସାର୍ଥକ । ଯାହା ଥିଲା ସାର୍‌ଙ୍କ ଜୀବନଯାତ୍ରାର ରୂପାନ୍ତର । ସେ ଯାତ୍ରା ଥିଲା ବହୁ ଘଟଣା ବହୁଳ, ରୋମାଞ୍ଚକର ଓ ଅନୁଭୂତିରେ ପରିପୂର୍ଣ୍ଣ । ପୁରୀ ଜିଲା ସ୍କୁଲଠାରୁ ଆରମ୍ଭ କରି କଟକ ରେଭେନ୍‌ସା କଲେଜ ପର୍ଯ୍ୟନ୍ତ ସମସ୍ତ କ୍ଷେତ୍ର ଥିଲା ତାଙ୍କର

କିଶୋର ବୟସର ଜ୍ଞାନ ଆହରଣର ଚରାଭୂମି । ଖୋର୍ଦ୍ଧା ମହାବିଦ୍ୟାଳୟ ଥିଲା ଜୀବନଜୀବିକାର ବେଳାଭୂମି । କର୍ମମୟ ଜୀବନଯୌବନର ପ୍ରାଣକେନ୍ଦ୍ର । ଖୋର୍ଦ୍ଧାର ବୀରମାଟି ହେଲା ସାଂସାରିକ ଜୀବନର ଏକୁଡ଼ିଶାଳ । ଘଟଣାବହୁଳ ସାଂସାରିକ କ୍ଷେତ୍ରରେ ସେ ଥିଲେ ଋଷିପ୍ରତିମ, ଧୈର୍ଯ୍ୟଶୀଳ ମହାମେରୁ ହିମାଳୟ । ଅଧ୍ୟାପନା ଥିଲା କର୍ମମୟ ଜୀବନର ସାଧନାର କେନ୍ଦ୍ରବିନ୍ଦୁ । ଅଧ୍ୟାପକରୁ ଅଧ୍ୟକ୍ଷ ହୋଇ ଗୋଟିଏ ସ୍ଥାନରୁ ଅବସର ନେବା ତାଙ୍କ ସାଧନାର ପ୍ରତିଫଳନ ।

ସେଇଠୁ ଆରମ୍ଭ ହେଲା ଶିକ୍ଷା ସଂସ୍କାର ପାଇଁ ମନ୍ତ୍ର ଓ ସାଧନାର ଜୟଯାତ୍ରା । ଏ ସାଧନାର ବହୁମୁଖୀ ପ୍ରତିଭା ବିକାଶର ପ୍ରାଣକେନ୍ଦ୍ର ଭୁବନେଶ୍ୱର ହେଲା ତାଙ୍କର ଶେଷ ଯାତ୍ରାସ୍ଥଳ । ନିରବଚ୍ଛିନ୍ନ ଭାବେ ଦୀର୍ଘବର୍ଷଧରି ଶିକ୍ଷାସେବାରେ ନିଜକୁ ନିୟୋଜିତ କରି ଶିକ୍ଷା, ଶିକ୍ଷାୟତନର ଆଙ୍ଗିକ, ଆତ୍ମିକ ଓ ବୌଦ୍ଧିକ ଅଭିବୃଦ୍ଧିରେ ନିଜକୁ ସମର୍ପଣ କରି ଅଗଣିତ ଛାତ୍ରଛାତ୍ରୀ, ଶିକ୍ଷକ ଓ ଶିକ୍ଷାପ୍ରେମୀଙ୍କର ଶ୍ରଦ୍ଧାଭାଜନ ହୋଇ ଶିକ୍ଷକ ସମାଜର ଗୌରବକୁ ଊର୍ଦ୍ଧ୍ୱରେ ତୋଳିଥିବା ଏକ ଅନନ୍ୟ ବ୍ୟକ୍ତିତ୍ୱ, ଜଣେ କର୍ତ୍ତବ୍ୟନିଷ୍ଠ ସାଧକ । ରାଜ୍ୟ, ଦେଶ ତଥା ଅନ୍ତର୍ଦ୍ଦେଶରେ ଶିକ୍ଷକ ସମାଜର ପ୍ରେରଣାର ଏକ ମାଇଲଖୁଣ୍ଟ । ବହୁମୁଖୀ ପ୍ରତିଭାର ସମାହାର ତାଙ୍କର ଜୀବନଯାତ୍ରା । ଶିକ୍ଷକ ଆନ୍ଦୋଳନର ଦୁର୍ବାର ଯୋଦ୍ଧା, ମହାସଂଗ୍ରାମର ସେ ସଫଳ ନାୟକ । ସେ ଥିଲେ ଶିକ୍ଷକ କର୍ମଚାରୀ ସଂଗଠନର ସମନ୍ୱୟର ସେତୁ । ବାତ୍ୟା, ବନ୍ୟା ଦୁର୍ଗତଙ୍କର ଦୁର୍ଦ୍ଦିନର ସାଥୀ । ସମାଜସେବା, ରାଜନୀତି କ୍ଷେତ୍ରରେ ଅବିସ୍ମରଣୀୟ ସ୍ୱାକ୍ଷର ବହନ କରିଥିବା ସେ ଜଣେ ନିଆରା ମଣିଷ । ଓଡ଼ିଆ ସାହିତ୍ୟାକାଶର ସମୁଜ୍ଜ୍ୱଳ ତାରକା । ସାହିତ୍ୟ ସାଧନାର ଉନ୍ମେଷ ଘଟିଥିଲା ଯେତେବେଳେ ସେ ଥିଲେ ଦଶମ ଶ୍ରେଣୀ ଛାତ୍ର । ଛାତ୍ରଜୀବନରୁ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ତାଙ୍କର ପ୍ରଚେଷ୍ଟା ଅନନ୍ୟ ସାଧାରଣ । ଘଟଣା ବହୁଳ ଜୀବନ ମଧ୍ୟରେ ସେ ନିଜକୁ ସାହିତ୍ୟ ସାଧନାରେ ନିୟୋଜିତ କରି ଏକ ବାସ୍ତବଧର୍ମୀ କାବ୍ୟ, କବିତା, ଉପନ୍ୟାସ, ପ୍ରବନ୍ଧ ଲେଖି ପାଠକ ସମାଜରେ ସେ ଆଦୃତ । ସାରସ୍ୱତ ସାଧନାରେ ସେ ଚିରଭାସ୍ୱର, ଚିରଅମଳିନ ସାଧକ ।

ମହାନ ଦାର୍ଶନିକ କାର୍ଲମାକ୍ସଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ, ଶ୍ରେଣୀହୀନ, ଶୋଷଣ ବିହୀନ, ସମାଜ ପ୍ରତିଷ୍ଠା କରିବାରେ ସେ ଥିଲେ ବିପ୍ଳବୀ ନେତା । ଶିକ୍ଷାକ୍ଷେତ୍ରରେ ସାମାଜିକ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନର ସେ ଥିଲେ ଅଗ୍ରଦୂତ । କର୍ତ୍ତବ୍ୟନିଷ୍ଠ

ବ୍ୟକ୍ତିତ୍ୱ, ଅଦମ୍ୟ ମନୋବଳ ଓ ସାହସ, କାର୍ଯ୍ୟ କରିବାର ତରିକା ଥିଲା ତାଙ୍କ ସଫଳତାର ଉତ୍ସ ।

ସଫଳତାର ଶୀର୍ଷରେ ପହଞ୍ଚିଥିବା, ଜୀବନରେ ପୂର୍ଣ୍ଣତା ଆଣିଥିବା ବ୍ୟକ୍ତିଟି ଯେତେବେଳେ ଦୂରେଇଯାଏ, ସେତେବେଳେ ଅନ୍ୟମାନଙ୍କ ମନରେ ଶୂନ୍ୟତା ଅନୁଭବ ହୁଏ । ଯାହା ଆଜି ଆମେ ଅନୁଭବ କରୁଅଛୁ । ସଫଳତାର ଜୟମାଲ୍ୟ ପିନ୍ଧି ଚାଲିଗଲେ ସେ । 'ଅବନୀ ବରାଳ ଅମର ରହେ', 'ଅବନୀବାବୁ ତୁମକୁ ଲାଲ ସଲାମ' ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଲା । କିନ୍ତୁ ଐତିହାସିକ ଖୋରଧା ମାଟିର ବୀର ଏକ ଐତିହାସିକ ବ୍ୟକ୍ତିତ୍ୱ, କିମ୍ବଦନ୍ତୀ ପୁରୁଷଙ୍କ ସ୍ଥାନ ହୋଇଗଲା ଶୂନ୍ୟ । ସେ ସ୍ଥାନ ରହିବ ଅପୂରଣୀୟ । ମହାସଂଗ୍ରାମର ମହାନାୟକ ଆଜି ଶୋଇଗଲେ ଚିର ନିଦ୍ରାରେ । ଶିକ୍ଷକଜାତିର ମଉଡ଼ମଣିଙ୍କ ରତ୍ନସିଂହାସନ ଆଜି ଶୂନ୍ୟ ! ସାମ୍ୟବାଦୀ ସଂଗ୍ରାମର ସେନାପତି ଆଜି ଚିର ବିଶ୍ରାମରେ ଶୋଇଗଲେ । ଶୁଭିବନି ଆଉ ତାଙ୍କ ରଣହୁଂକାର – 'ଲଢ଼େଇ ଲଢ଼େଇ ଲଢ଼େଇ ଚାହୁଁ, ଲଢ଼େଇ କରି ବଞ୍ଚିବା ଚାହୁଁ', 'ଶିକ୍ଷକ ଜାତି ଏକ ହୁଅ', 'ଶିକ୍ଷକ କର୍ମଚାରୀ ଏକ ହୁଅ' । ଶୂନ୍ୟ ହୋଇଗଲା କାହାରି କୋଳ, ଶୂନ୍ୟ ହୋଇଗଲା କାହାରି ବାପା, ଅଜା ଡାକ, ଶୂନ୍ୟ ପଡ଼ିଗଲା ଭୌମନଗର ଚୌକି ଟେବୁଲ, ରହିଗଲା ଚଳଚଞ୍ଚଳ ଗତିଶୀଳ କଲମ । ପତ୍ରିକାରେ ଆଉ ଦିଶିବନି ମାର୍କର କଲମର ଚିହ୍ନ । ଆଜି ଶୂନ୍ୟ ସବୁ ଶୂନ୍ୟ । ସେଇ ମହାଶୂନ୍ୟତା ଭିତରେ ଉଙ୍କିମାରୁଛି ସ୍ମୃତିର ପଦଚିହ୍ନ ଯାହା ଅମ୍ଳାନ ସ୍ମୃତିର ଗନ୍ତାଘର ।

ଚିରବନ୍ଦନୀୟ ହେ ମହାପୁରୁଷ, ଯୋଗଜନ୍ମା, ତୁମ ଆତ୍ମାର ସଦ୍‌ଗତି କାମନା କରି ଶେଷ ପ୍ରଣାମ ଜଣାଉଛି ଆପଣ ମୋ ପାଇଁ ଅମର ଓ ଅବିସ୍ମରଣୀୟ ।

ଜୟ ଜଗନ୍ନାଥ ।

* * *

ପ୍ରାକ୍ତନ ଯୁଗ୍ମ ସଂପାଦକ, ଓଲ୍‌ଷ୍ଟା
ସା./ପୋ.ଅ– ଜଟଣୀ, ଖୋର୍ଦ୍ଧା

# ରସିକ ଶ୍ରେଷ୍ଠ

• ଶ୍ରୀ ଦେଶବନ୍ଧୁ ସ୍ୱାଇଁ

ନଭେମ୍ବର ମାସଟି ଶିକ୍ଷକମାନଙ୍କ ଲାଗି ଅଧିକ ସ୍ମରଣୀୟ ହୋଇଗଲା । ଏ ମାସର ୫ତାରିଖରେ ପାଳନ କରାଯାଉଥିଲା ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ପ୍ରତିଷ୍ଠାତା ବନମାଳୀ ବ୍ରହ୍ମଚାରୀଙ୍କ ଜୟନ୍ତୀ । ଏଣିକି ଆସନ୍ତା ୧୯୧୪ ମସିହାରୁ ସାତ ତାରିଖଟି ପାଳିତ ହେବ ଶିକ୍ଷକ ମହାସଂଘର ସଂପାଦକ ଶ୍ରୀଯୁକ୍ତ ଅବନୀ ବରାଳଙ୍କ ତିରୋଧାନ ଦିବସ ରୂପେ ।

ବନମାଳୀ ବ୍ରହ୍ମଚାରୀ ଓ ଅବନୀ ବରାଳ, ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ କହିଲେ ଠିକ୍ ହେବ । ସାଧାରଣତଃ ମୁଦ୍ରାର ଗୋଟିଏ ପାଖକୁ 'ହେଡ୍' ଓ ଅନ୍ୟ ପାଖକୁ 'ଟେଲ୍' କୁହାଯାଇଥାଏ । କିନ୍ତୁ, ଏ ଯେଉଁ ମୁଦ୍ରା, ଏଥିରେ କିଏ ହେଡ୍ କିଏ ଟେଲ୍, ବାରିହେବନି କିଛି । କାରଣ ଉଭୟେ ତ ଶିକ୍ଷକନେତା, ଉଭୟେ ବି ସକ୍ରିୟ ରାଜନୀତିରେ ଅଂଶଗ୍ରହଣ କରିଛନ୍ତି ଏବଂ ଆଶ୍ଚର୍ଯ୍ୟର କଥା, ଉଭୟେ ସୁସାହିତ୍ୟିକ ।

ଚାକିରି ଆରମ୍ଭରୁ ପୂଜ୍ୟ ବ୍ରହ୍ମଚାରୀଙ୍କ ସହ ମୋର ପରିଚୟ ଓ ପରିଚୟରୁ ଘନିଷ୍ଠତା । ମୋ ସାହିତ୍ୟିକ ସର୍ଜନାର ସେ ଜଣେ ବଡ଼ ପ୍ରଶଂସକ ଓ ମୋର ପ୍ରଥମ ଗଳ୍ପ ସଂକଳନର ପ୍ରକାଶକ । କିନ୍ତୁ ଚାକିରିକାଳ ମଧ୍ୟରେ ଅବନୀ ବାବୁଙ୍କ ସହ ମୋର ସମ୍ପର୍କ ସେତେ ନିବିଡ଼ ନ ଥିଲା । ନିବିଡ଼ତା ଜନ୍ମିଲା ଅବସର ଗ୍ରହଣ ପରେ, ମୋର ଭୁବନେଶ୍ୱର ରହଣି ଅବସରରେ ।

ଏକ ସଙ୍ଗେ ଭୁବନେଶ୍ୱର ଓ କେନ୍ଦ୍ରାପଡ଼ାରୁ ପ୍ରକାଶ ପାଉଥିବା ଦୈନିକ ସମ୍ବାଦପତ୍ର 'ଓଡ଼ିଶା ଏକ୍ସପ୍ରେସ୍'ର ଅବନୀ ବାବୁ ଜଣେ ଧରାବନ୍ଧା ଲେଖକ । ଏକାଧାରରେ ସେ ଜଣେ ଗାଳ୍ପିକ, ପ୍ରାବନ୍ଧିକ ଓ ସ୍ତମ୍ଭକାର । ଗୁରୁବାର ଦିନଟି ଏହି ସମ୍ବାଦପତ୍ରର ପଞ୍ଚମ ପୃଷ୍ଠାଟି ସାହିତ୍ୟପର୍ବ । ପୃଷ୍ଠାର ଆରମ୍ଭରୁ ନିମ୍ନଲିଖିତ କେଇଧାଡ଼ି ମନରେ ବେଶ୍ ଉତ୍କଣ୍ଠା ଜନ୍ମାଏ । ''—ସପ୍ତମ ଋତୁ ସାହିତ୍ୟର ଋତୁ । ଏ ଋତୁରେ କୋଇଲି ଗାଏ, ବଉଳ ବାସେ, ମଲ୍ଲୀ ହସେ, କାକର ଝରେ, ବୁଢ଼ିଆଣୀ ଜାଲରେ ତାରକସି ଫୁଲ ଫୁଟେ । ଭଅଁର ଓ ପ୍ରଜାପତିଙ୍କୁ ମତୁଆଲା କରେ ରଜନୀଗନ୍ଧା । ବର୍ଷା ରିମ୍‌ଝିମ୍ ଗାଏ, ପ୍ରକୃତି ଇନ୍ଦ୍ରଧନୁ ଆଙ୍କେ । ପଞ୍ଚମ ତାନରେ ସବୁବେଳେ ଗାଏ

କୋଇଲି...” । ଏହି ମୁଖବନ୍ଧ ସହ ବିଷୟ ଉପଯୋଗୀ ଚିତ୍ର ପାଠକର ମନକୁ ଟାଣେ । ଏମିତି ଗୋଟେ ଗୁରୁବାରେ ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡର ଏକ ପତ୍ରିକା ଦୋକାନରେ ଜଣେ ବ୍ୟକ୍ତି ଏହି ସମ୍ବାଦପତ୍ରର ସାହିତ୍ୟ ପୃଷ୍ଠା ଉପରେ ନଜର ପକାଉଥିଲା ବେଳେ ଦେଖିଲି, ଅବନୀ ବାବୁଙ୍କର ଏକ ଗଳ୍ପ ପ୍ରକାଶ ପାଇଛି । ସଙ୍ଗେ ସଙ୍ଗେ ସେହି କାଗଜରୁ ଖଣ୍ଡେ କିଣିଲି ଓ ଏହି ସାହିତ୍ୟ ପୃଷ୍ଠା ହିଁ ମୋତେ ଏହାର ନିୟମିତ ଗ୍ରାହକଟିଏ କରିଦେଲା ।

ସମସ୍ତେ ଜାଣନ୍ତି, ଅବନୀ ବାବୁ ଜଣେ ତୁଙ୍ଗ ଶିକ୍ଷକନେତା ! ପରବର୍ତ୍ତୀ କାଳରେ ସେ ସକ୍ରିୟ ରାଜନୀତିରେ ଯୋଗଦେଇ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସଂପାଦକ ହୋଇଥିଲେ । ଏ ଦୁଇଟି କ୍ଷେତ୍ରର ପ୍ରଭାବ ତାଙ୍କୁ ରସିକରୁ ବେରସିକ କରିଦେଲା ବୋଧେ । ତା' ନ ହୋଇଥିଲେ 'ପ୍ରେମର ଅନ୍ୱେଷଣରେ ଏକ ତରୁଣୀ'ର ଲେଖକ କ'ଣ ଗଳ୍ପ-ଉପନ୍ୟାସରୁ ମୁହଁ ଫେରାଇନେଇ ଗଦାଗଦା ପ୍ରବନ୍ଧ ରଚନାରେ ମନୋନିବେଶ କରିଥା'ନ୍ତେ ?

କଲେଜରେ ପାଦ ଦେବାଠୁ ମୋର ଗଳ୍ପ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶିତ ହୋଇଆସୁଛି । କିନ୍ତୁ କୌଣସି ସମ୍ବାଦପତ୍ରକୁ ମୁଁ ଗଳ୍ପ ପଠାଉ ନ ଥିଲି । 'ଓଡ଼ିଶା ଏକ୍ସପ୍ରେସ୍'ରେ ଅବନୀ ବାବୁଙ୍କ କେତୋଟି ଗପ ପଢ଼ି ମୋର ଏ ଦିଗରେ ମନବଳିଲା । ତେବେ ମୁଁ ତ ଅବନୀ ବାବୁଙ୍କ ପରି ଏତେ ଜଣାଶୁଣା ନୁହେଁ, ହୁଏତ ସଂପାଦକ ମୋ ଗପ ଛାପି ନ ପାରନ୍ତି । ତଥାପି ଆଶା ନ ହରାଇ ପ୍ରଥମେ ମୋର ପରିଚୟର ସୂଚନା ଦେବାଲାଗି ସାହିତ୍ୟ ବିଭାଗର ସଂପାଦକ ସୁନୀଲ୍ ଘୋଷଙ୍କୁ ମୋର ତୃତୀୟ ଗଳ୍ପ ସଂକଳନ 'ଲାଖବିନ୍ଧା'ର ସମୀକ୍ଷା ନିମନ୍ତେ ଦୁଇଖଣ୍ଡ କପି ଦେଲି ଓ ଅବନୀ ବାବୁଙ୍କ ଲେଖା ବିଷୟରେ ତାଙ୍କୁ ପଚାରିଲି । ଅବନୀ ବାବୁଙ୍କ ନାଁ ଶୁଣି ସେ ମହାଶୟ ଆନନ୍ଦରେ ଗଦ୍‌ଗଦ୍ ହୋଇଉଠିଲେ । ଏକଦା ଖୋର୍ଦ୍ଧା କଲେଜରେ ସେ ଥିଲେ ଅବନୀ ବାବୁଙ୍କ ଛାତ୍ର । ସାରଙ୍କର ସେ ଏତେ ଗୁଣଗାନ କଲେ ଯେ ପୁରାଣର ଅରୁଣୀ ବି ତାଙ୍କ ପାଖେ ହାରମାନିଯିବ !

ସେତିକିବେଳେ ଜାଣିଲି ଯେ ଅବନୀ ବାବୁଙ୍କର ସେହିସବୁ ଗଳ୍ପ ଏବକାର ନୁହଁ । ତାଙ୍କର ପୁରୁଣା ଗଳ୍ପ ସଂକଳନରୁ ମଝିରେ ମଝିରେ ସଂପାଦକ ମହୋଦୟ ତାଙ୍କ କାଗଜରେ ଗୋଟିଏ ଲେଖାଁ ଛାପିଦିଅନ୍ତି । ଗୁରୁଦକ୍ଷିଣା ସ୍ୱରୂପ ନୁହେଁ, ସାରଙ୍କ ଲେଖନୀର ସର୍ବକାଳୀନ ଆବେଦନ ଯୋଗୁଁ ।

'ଲେଖାବିନ୍ଧା' ଉପରେ କିଛି ସମୟ ଆଖି ବୁଲେଇନେଇ ସୁନୀଲ ବାବୁ କହିଲେ – ଆପଣଙ୍କ ଲେଖାସବୁ ଦୀର୍ଘ । ଆମ ସାହିତ୍ୟ ପୃଷ୍ଠା ଲାଗି ଟିକେ ଛୋଟ ଗଳ୍ପ ଆବଶ୍ୟକ । ଲେଖା ମଧ୍ୟରେ ଚିତ୍ର ନ ରହିଲେ ପାଠକ ଆକୃଷ୍ଟ ହେବେନି । ସେ ତେଣୁ ମୋର ପୂର୍ବ ଦୁଇଟି ସଂକଳନ ଦେଖିବାକୁ ଚାହିଁଲେ । ଯୋଗକୁ ସେ ଦୁଇଖଣ୍ଡ ମୋ ବ୍ୟାଗରେ ଥିଲା, ତାଙ୍କୁ ଦେଲି ।

ଏହାର ଅଳ୍ପଦିନ ପରେ ଉପରୋକ୍ତ ଗଳ୍ପ ସଂକଳନର ଛୋଟ ଛୋଟ ଗଳ୍ପ 'ଓଡ଼ିଶା ଏକ୍ସପ୍ରେସ୍'ର ପୃଷ୍ଠା ମଣ୍ଡନ କରିଚାଲିଲା । ଖାଲି ସେହି ପୁରୁଣା ଗପ ନୁହେଁ, ସମ୍ପାଦକଙ୍କ ଅନୁରୋଧ କ୍ରମେ ବେଳେ ବେଳେ ନୂଆ ଗପ ବି ଦେଇଥାଏ ଏବଂ କେଁ ସଂଖ୍ୟାରେ ଉପର-ତଳ ହୋଇ ଅବନୀ ବାବୁଙ୍କ ଗଳ୍ପ ସହ ମୋ ଗଳ୍ପ ସ୍ଥାନିତ ହୋଇଥାଏ, ଶ୍ରମ ସାର୍ଥକ ହୋଇଛି ବୋଲି ମନେକରେ ।

ଥରେ ସାର୍‌ଙ୍କ ପତ୍ନୀ ଆଦରମଣି ବରାଳ ଯାହାଙ୍କୁ ଜଣେ ସାହିତ୍ୟିକା କିମ୍ବା ଅଧ୍ୟାପିକା ଭାବେ ଜାଣିବା ପୂର୍ବରୁ ଆକାଶବାଣୀର ବେତାର ନାଟିକା 'ତଅପୋଇ'ର ବଡ଼ବୋହୂ ଭାବେ ଜାଣିଥିଲି, ଫୋନ୍ ମାଧ୍ୟମରେ ମୋର କେତୋଟି ଗଳ୍ପ ନିମନ୍ତେ ଭୂୟସୀ ପ୍ରଶଂସା କଲେ ଏବଂ ଅଳ୍ପ କେତେଦିନ ପରେ ସାର୍ ମଧ୍ୟ ମୋତେ ଫୋନ୍ କଲେ । କହିଲେ – ତମ ଗପସବୁ ପଢୁଛି । ପ୍ରେମଗଳ୍ପ ଲେଖିବାରେ ତୁମେ ତ ସିଦ୍ଧହସ୍ତ । ଦେଖୁଛି, ସାମାଜିକ ସମସ୍ୟାକୁ ନେଇ ତୁମ ଲେଖା ବି ଖୁବ୍ ମନଛୁଆଁ । 'ଶିକ୍ଷା ସମସ୍ୟା'କୁ ଲେଖା ଦେଉନ କାହିଁକି ? "ଗଲି ଆଇଲି, ଯାହା ଦେଖିଲି ତାହା ଲେଖିଲି" ନ୍ୟାୟରେ 'ଶିକ୍ଷା ସମସ୍ୟା' ଏକ ବିଶୁଦ୍ଧ ସମ୍ବାଦ ବୁଲେଟିନ୍ ପାଲଟିଗଲାଣି । ତାକୁ ଟିକେ ରସାଳ କର ।

–"ଆଜ୍ଞା ! ଆପଣଙ୍କ ଭଳି ସୁଦକ୍ଷ ବିନ୍ଧାଣୀ ହାତରେ 'ଶିକ୍ଷା ସମସ୍ୟା' କ'ଣ ରସାଳ ହୋଇପାରିବନି ଯେ ଆପଣ ମୋ ପରି ଅକିଞ୍ଚନର ସାହାଯ୍ୟ ଲୋଡୁଛନ୍ତି ?"

ସାର୍ ହସି ହସି କହିଲେ – ଆଉ କ'ଣ ସେ ବୟସ ଅଛି ରସାଳ କାହାଣୀ ଲେଖିବାକୁ । ଶିକ୍ଷକମାନଙ୍କର ସମସ୍ୟା କମିବ କ'ଣ, ଦିନକୁ ଦିନ ବଢ଼ିବାରେ ଲାଗିଛି । ସେସବୁ କିପରି ସମାଧାନ ହେବ, ସବୁବେଳେ ସେଇ ଚିନ୍ତା । ସମୟ କାହିଁ ଯେ ଗଳ୍ପ ଉପନ୍ୟାସ ଲେଖିବି ?

ଏଥି ମଧ୍ୟରେ ବର୍ଷେ ବିତିଗଲେ ବି ସାର୍‌ଙ୍କ କଥା ରଖିପାରି ନ ଥିଲି । ଏବେ ଥରେ ଲୋହିଆ ଏକାଡେ଼ମୀରେ ସାର୍‌ଙ୍କ ସହ ଦେଖାହେଲା । ସେ ସେହି ପୁରୁଣା କଥା ଦୋହରାଇଲେ । କଥା ଦେଇଥିଲି, ଦୀପାବଳୀ ପରେ ଲେଖା ଦେବି ଓ ଭାବିଥିଲି ଆମ ପତ୍ରିକା ଲାଗି ଲେଖାଟେ ସେତିକିବେଳେ ମାଗି ଆଣିବି । ହେଲେ, ମୋ ଯିବା ପୂର୍ବରୁ ହଠାତ୍ ଦୀପ ଲିଭିଗଲା !

ଅନେକ ହୁଏତ ସାର୍‌ଙ୍କ ରସାଳ କାହାଣୀ ପଢ଼ି ନ ଥିବେ । ସେଥିଲାଗି ଆମ ନିମାପଡ଼ା ଶିକ୍ଷାଜିଲ୍ଲାର ନିମ୍ନ ମାଧ୍ୟମିକ ଅବସରପ୍ରାପ୍ତ ଶିକ୍ଷକ ମଞ୍ଚର ମୁଖପତ୍ର 'ଶିକ୍ଷାଂଶୁ'ର ପ୍ରତ୍ୟେକ ସଂଖ୍ୟାରେ ମୁଁ ତାଙ୍କର ଗଳ୍ପ ହିଁ ସ୍ଥାପିତ କରିଥାଏ । 'ଅଭିନୟ' ଗଳ୍ପରେ ଜଣେ ଅଭିନେତ୍ରୀର ସ୍ୱୀକାରୋକ୍ତି ମାଧ୍ୟମରେ ସାର୍‌ଙ୍କୁ ଦେଖନ୍ତୁ– "ସ୍ୱଟର ଆଲୁଅ ବିଭିନ୍ନ ଅଞ୍ଚଳରେ ପଡ଼ିଲା ଭଳି ଆପଣଙ୍କ ସେ ଆଖିଯୋଡ଼ାକ ଚାଟି ଯାଉଥା'ନ୍ତି ମୋ ଦେହର ଅଙ୍ଗ ପ୍ରତ୍ୟଙ୍ଗମାନଙ୍କୁ, ବିଭିନ୍ନ ଅଞ୍ଚଳକୁ । ମୋ ମୁହଁ, ମୋ ଆଖି, ଗାଲ, କାନ...ଆଉ ସବୁଠାରୁ ବେଶି ଆପଣଙ୍କ ଆଖି ଲାଖିଯାଏ ମୋ କୋଡ଼ିଏ ଟଙ୍କାଦିଆ କିଣା ଯୌବନ ଉପରେ ।"

ସାର୍ ବି ଜଣେ ସାମ୍ୟବାଦୀ । ଏହାର ଛାପ ତାଙ୍କ ଲେଖାରେ ରହିବନି କେମିତି ? ସେହି ଗଳ୍ପର ଶେଷ ଆଡ଼କୁ ସେ ଲେଖିଛନ୍ତି– "ଆମେ ଏଇ ଆଲୋକ ପଛକଡ଼ର ଅନ୍ଧାର ଭିତରେ ଥାଉ, ସାରିସାରି ହୋଇ ଧାଡ଼ି ଧାଡ଼ି ନୁଆଣିଆ ଚାଳଘରେ । ଏ ଘରେ ଆମର ରଙ୍ଗ ନାହିଁ, ପଲସ୍ତରା ନାହିଁ, ମିଛର ଛଳନା ନାହିଁ । କେତେ ପୁରୁଣା ମସିହା ଯୌବନ ଏଠି କଣ୍ଟାରେ ଟଙ୍ଗାହୋଇ ଝୁଲାହୋଇଛି ଦେଖିବେ– ଯାହାକୁ ସବୁ ଆପଣ ଲୋଭାତୁରା ଆଖିରେ ଚାହାଁନ୍ତି ।"

ସେହିପରି ତୃପ୍ତି ଗଳ୍ପ ମାଧ୍ୟମରେ ଶିକ୍ଷକମାନଙ୍କୁ ହେୟଜ୍ଞାନ ମନେ କରୁଥିବା ଲୋକଙ୍କୁ ସାର୍ ଯେଉଁ ଶିକ୍ଷା ଦେଇଛନ୍ତି, ତାହା ବେଶ୍ ହୃଦୟଗ୍ରାହୀ । "ଲୁହ, ହସ, ଲାଜ ସବୁ ମିଶାଇ ତରୁଣୀ ନବୀନା ବଧୂଟିଏ ଭଳି ସୁଜାତା ରମାନାଥର କୋଳରେ ଆଉଜିପଡ଼ିଲା ।" ଗଳ୍ପର ଏଇ ଶେଷ ଧାଡ଼ିରେ ରମାନାଥର ପତ୍ନୀ ସୁଜାତା ପରିଶେଷରେ ତା'ର ସମସ୍ତ ଦୈନ୍ୟକୁ ଭୁଲିଯାଇ ନିଜକୁ ଜଣେ ଶିକ୍ଷକପତ୍ନୀ ଭାବେ ଧନ୍ୟ ମନେକରିଛି । କାହାଣୀ ମାଧ୍ୟମରେ ଶିକ୍ଷକବୃତ୍ତିକୁ ଏପରି ମର୍ଯ୍ୟାଦା ଅବନୀ ବାବୁଙ୍କ ବ୍ୟତୀତ ଆଉ କିଏ ଦେଇପାରନ୍ତା ?

ସାର୍‌ଙ୍କ ଏଭଳି ପୁରୁଣା ଲେଖା ପ୍ରକାଶ କରୁଥିବାରୁ ସେ ଖୁବ୍ ପ୍ରୀତ ହୋଇ ଅବସରପ୍ରାପ୍ତ ଶିକ୍ଷକ ମଞ୍ଚର ସଭାପତି ଶ୍ରୀଯୁକ୍ତ ମାଧବ ବିଶ୍ୱାଳଙ୍କୁ କହୁଥିଲେ – ମୋର ଏ ଲେଖାସବୁ ଦେଶ କେଉଁଠୁ ପାଉଛି !

ଏ ବର୍ଷର ଶିକ୍ଷାଂଶୁ ଲାଗି ସାର୍‌ଙ୍କ ଏକ ଅନୁବାଦ ଗଳ୍ପ ବାଛିଥିଲି । ମୂଳ ରଚନା ସୁନୀଲ ଗଙ୍ଗୋପାଧ୍ୟାୟ । ଗପଟି ଏକା ନିଶ୍ୱାସକେ ପଢ଼ିଲା ଭଳି । ଏଥି ମଧ୍ୟରେ ସାର୍‌ଙ୍କ ସହ ଗପିବାର ସାହସ ଆସିଯାଇଥିଲା । ଭାବିଥିଲି, ଏଇ ଗପଟି ଛାପି ସାର୍‌ଙ୍କୁ ଚମକାଇ ଦେବି ଓ କହିବି– ଜଣେ ଯୁବ ଗୃହଶିକ୍ଷକର ତା' ଛାତ୍ରୀପ୍ରତି ସାମୟିକ ଉତ୍ତେଜନାଜନିତ ଅସଦାଚରଣକୁ ଆପଣ ଖୋଜି ଖୋଜି କିପରି ଠାବ କଲେ ? ମାନିବାକୁ ପଡ଼ିବ ଆପଣଙ୍କ ଚୟନକୁ । ଜଣେ ରସିକ ଶ୍ରେଷ୍ଠ ପକ୍ଷେ ଏହା କେବଳ ସମ୍ଭବ ।

ସାର୍‌ଙ୍କୁ ଚମକାଇବି କ'ଣ, ସାର୍ ତାଙ୍କ ଅସଂଖ୍ୟ ଗୁଣଗ୍ରାହୀଙ୍କୁ ଚମକାଇଦେଲେ । କିଛି ପୂର୍ବ ସୂଚନା ନ ଥାଇ ହଠାତ୍ ସମସ୍ତଙ୍କୁ ପର କରିଦେଇ ଚାଲିଗଲେ ସେ ପୁରକୁ !

ତେବେ, ସତରେ କ'ଣ ସାର୍‌ଙ୍କୁ ମୁଁ ରସିକଶ୍ରେଷ୍ଠ କହିପାରିଥା'ନ୍ତି ? କେଜାଣି ? ଆଜି କିନ୍ତୁ ତାଙ୍କର ଦେହାବସାନ ପରେ କହିବାକୁ ସାହସ କରୁଛି । ସ୍ୱର୍ଗରେ ଥାଇ ସାର୍ ଆମ ସମସ୍ତଙ୍କୁ ଆଶୀର୍ବାଦ କରିବା ସହ ତାଙ୍କ ସ୍ୱଭାବ ସୁଲଭ ଠାଣିରେ ମୁରୁକି ମୁରୁକି ହସୁଥିବେ ।

ଗ୍ରାମ/ପୋଷ୍ଟ - ପାଟଳଦା,
ଅସ୍ତରଙ୍ଗ, ପୁରୀ
ମୋବାଇଲ୍ : ୯୯୩୭୯୨୩୨୬୭



# ଟାଣୁଆ ନେତା ଅବନୀ ବରାଳ

• ମେଜର (ଡଃ) ଦୁଷ୍ମନ୍ତ କୁମାର ରାଉତରାୟ

ଦୁଇ ହଜାର ତେର ମସିହା ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ ଦିବସ ପାଳନ ପାଇଁ ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟ N.C.C. କାର୍ଯ୍ୟାଳୟ ସମ୍ମୁଖରେ ପିଲାମାନଙ୍କୁ ଅଭ୍ୟାସ ପ୍ୟାରେଡ୍ କରାଉଥାଏ । ହଠାତ୍ ଆମ ମହାବିଦ୍ୟାଳୟ ଅଧକ୍ଷଙ୍କ କଳାରଙ୍ଗର ହୋଣ୍ଡା ସିଟି କାରଟି N.C.C. ଅଫିସ୍ ସାମନା ରାସ୍ତାରେ ଅଟକିଗଲା । ଦେଖିଲି କାର୍ ଭିତରୁ ସାମ୍ନା କାଚ ଖୋଲି କ୍ଷୀରୋଦ ସାରେ ମୋତେ ଡାକୁଛନ୍ତି । ଦୌଡ଼ିକରି ଗଲି । କ୍ଷୀରୋଦ ସାର୍ କହିଲେ, "ଦୁଷ୍ମନ୍ତ ବାବୁ - ପ୍ୟାରେଡ୍ ବନ୍ଦ କରିଦିଅ । ଅବନୀ ବାବୁ ଚାଲିଗଲେ । ''ପ୍ୟାରେଡ୍ ବନ୍ଦ କଲି । କ୍ୟାଡେଟ୍‌ମାନଙ୍କୁ ଏକାଠି କରି ଆତ୍ମାର ସଦ୍‌ଗତି ପାଇଁ ନୀରବ ପ୍ରାର୍ଥନା କଲୁ । ପରଦିନ ସକାଳୁ ମୋ ନିଜ ଗାଁ'କୁ ବୋଉକୁ ଦେଖିଯିବାକୁ ଥାଏ । ଏହା ପୂର୍ବରୁ ଅବନୀ ସାର୍‌ଙ୍କ ଖୋର୍ଦ୍ଧା ବାସଭବନକୁ ଗଲି । ସେଠାରେ ମୋ ପୂର୍ବରୁ ଅନେକେ ଶିକ୍ଷକନେତା ଏକଯୁଟ୍ ହୋଇଥା'ନ୍ତି । ଅବନୀ ସାର୍‌ଙ୍କ ଧର୍ମପତ୍ନୀ ଆଦରମଣି ବରାଳ ଯିଏକି B.J.B କଲେଜ୍‌ରେ I.A ପଢ଼ିଲା ବେଳେ ଶିକ୍ଷକ ଥିଲେ ମୋତେ କୁଣ୍ଢାଇ ପକାଇ କାନ୍ଦିଲେ । ସାନ୍ତ୍ୱନା ଦେଲି । ସେଠାରୁ ଫେରିଆସି ଗାଁ'କୁ ଗଲି । ଗାଁ'ରୁ ଆସିବା ପରେ "ଶିକ୍ଷକ ଦର୍ପଣ" ପତ୍ରିକା ପାଇଁ ଅବନୀ ସାର୍‌ଙ୍କ ବିଷୟରେ କିଛି ଲେଖିବାକୁ ସୁରେଶ ବାବୁଙ୍କ ଅନୁରୋଧ ରକ୍ଷାକରି କାର୍ଯ୍ୟବ୍ୟସ୍ତତା ମଧ୍ୟରେ କ'ଣ ଲେଖିବି ଭାବି ଦୁଇଧାଡ଼ି ନ ଲେଖିଲେ ମନ ଊଣା ହେବ ବୋଲି ଲେଖୁଛି ।

ଅବନୀ ସାର୍‌ଙ୍କୁ ଦେଖିଲେ ମନେହୁଏ ସର୍ଦ୍ଦାର ବଲ୍ଲଭଭାଇଙ୍କ କଥା । ଚେହେରା ସେଇଭଳି, ସ୍ୱଭାବ ମଧ୍ୟ ସେହିଭଳି । ଟାଣୁଆ ପ୍ରିନ୍‌ସିପାଲ୍ । ଖାଲି ଖୋର୍ଦ୍ଧାରେ ନୁହେଁ ଭାରତ କ'ଣ ସାରା ପୃଥିବୀରେ ମଧ୍ୟ ଟାଣୁଆ ଶିକ୍ଷକ ନେତା । ସାଧାରଣ ଜଣେ ଓଡ଼ିଆ ବିଭାଗର ଅଧ୍ୟାପକ, ତାଙ୍କ ବିଭାଗୀୟ ମୁଖ୍ୟ, Vice-Principal, ତା'ପରେ Principal, Vice-Chancellor, Chancellor, Director, Secy.

Edn. Dept., କିନ୍ତୁ ସମସ୍ତେ ଦେଖିଲେ ଥରନ୍ତି । ସେ ସାରା ଭାରତ ପାଇଁ ଶିକ୍ଷା ସମସ୍ୟା ଉପରେ World Teachers Conference ରେ ପ୍ରତିନିଧିତ୍ୱ କରନ୍ତି । ଭାରତର ମାନବସମ୍ବଳ ମନ୍ତ୍ରୀ World Conference Attend କରିବା ପୂର୍ବରୁ Message ଦିଅନ୍ତି । Before going to attend World Teachers Conference Mr. Baral please contact & Discuss with me regarding the Educational system of India and putforth it. ତାଙ୍କ ସମୟରେ ଖୋର୍ଦ୍ଧା କଲେଜ୍‌ରେ ଚାକିରି କରିବାର ସୁଯୋଗ ଲାଭ କରିନାହିଁ । ଜଣେ ଶିକ୍ଷକ ନେତା ଭାବେ Govt.ରେ ମୋ ସାମ୍ନାରେ ଗାଳିଦେବା ଶୁଣିଛି । ଜଣେ ଓଡ଼ିଆ ବିଭାଗର ଅଧ୍ୟାପକ ହୋଇ ଶୁଦ୍ଧ ଇଂରାଜୀରେ ଭାଷଣ ଦେବା ଓ କହିପାରୁଥିବା ମୋ ଜାଣିବାରେ ସେ ପ୍ରଥମ ବ୍ୟକ୍ତି । ଅବନୀ ସାରେ ପ୍ରାଣନାଥ କଲେଜର ଅଧ୍ୟକ୍ଷ ଥିବ ବେଳେ ଛୋଟ ଛୋଟ କଲେଜର ଅଧ୍ୟାପକମାନେ ମନ୍ତ୍ରୀ ଓ ରାଜନୈତିକ ନେତାଙ୍କୁ ଧରି ପ୍ରାଣନାଥ ମହାବିଦ୍ୟାଳୟକୁ ବଦଳି ହୋଇ ଆସୁଥିବା ବେଳେ ରୋକ୍ ଠୋକ୍ Standard ର ଅବକ୍ଷୟ କରିବା ପାଇଁ ସୁଯୋଗ ନ ଦେଇ ମନ୍ତ୍ରୀଙ୍କୁ ସିଧାସଳଖ ପଚାରିବା ସହଜ କଥା ନୁହେଁ ଏସବୁ କଥା ଜଣେ ଟାଣୁଆ ଅଧ୍ୟକ୍ଷ ହିଁ କରିପାରନ୍ତି । ସାରଙ୍କ କଥାର ଉଦାହରଣ ବହୁ ଯାଗାରେ ଦିଏ Subject in Partent ନୁହେଁ Penson in Partent. ଟାଣୁଆ ନେତାଙ୍କ ଆତ୍ମାର ସଦ୍‌ଗତି ହେଉ । ତାଙ୍କ ପିଲାମାନେ ଏଇ ଦୁଃଖକୁ ସାମନା କରି ଧର୍ଯ୍ୟଧରି ରହନ୍ତୁ -ଏତିକି ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରୁଛି ।

* * *

* ମୁଖ୍ୟ ଅଧ୍ୟାପକ, ଶିକ୍ଷା ବିଭାଗ

ତଥା ଏନ୍.ସି.ସି. ଅଫିସର

ପ୍ରାଣନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ, ଖୋର୍ଦ୍ଧା

# ଅବନୀ ବରାଳଙ୍କ ଦେହାବସାନ – ଗୋଟିଏ ବର୍ଣ୍ଣୋଜ୍ଜ୍ୱଳ ଅଧ୍ୟାୟର ପରିସମାପ୍ତି

• ଶ୍ରୀ ନରୋତ୍ତମ ମହାପାତ୍ର

"ଅବନୀ ବରାଳ ଆଉ ନାହାଁନ୍ତି" – ହଠାତ୍ ଏହି ଶୋକଚ୍ଛ୍ୱାସଭରା ସମ୍ବାଦ ପାଇ ଗତ ୭ ତାରିଖ ଅପରାହ୍ନରେ ଭୁବନେଶ୍ୱରସ୍ଥିତ ସି.ପି.ଆଇ. ପାର୍ଟି ଅଫିସ୍ 'ଭଗବତୀ ଭବନ'ଠାରେ ଆମେ ପହଞ୍ଚି ଦେଖିଲୁ ଯେଉଁ ବିଶିଷ୍ଟ ବ୍ୟକ୍ତିବିଶେଷ, ରାଜନେତା, ବିଭିନ୍ନ ଗଣ ସଂଗଠନ, ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ, ଯୁବ ଓ ଛାତ୍ର ସଂଗଠନର କର୍ମକର୍ତ୍ତା ଓ ନେତୃତ୍ୱ, ଶ୍ରଦ୍ଧାଳୁ ଓ ସମ୍ପର୍କୀୟମାନେ ଦିବଂଗତ ହୋଇ ସାରିଥିବା ଅବନୀ ବରାଳଙ୍କୁ ଶେଷ ସମ୍ମାନ ଓ ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ ସେଠାରେ ପହଞ୍ଚିବାରେ ଲାଗିଥିଲେ, ସେମାନଙ୍କ ଭିତରୁ ଅଧିକାଂଶଙ୍କ କଣ୍ଠରୁ ବାହାରି ଆସିବା ଶୁଣୁଥିଲୁ ଯେ ଶିକ୍ଷକ ନେତା ଅବନୀ ବରାଳଙ୍କ ଦେହାବସାନରେ ଓଡ଼ିଶାର ଶିକ୍ଷା ଓ ଶିକ୍ଷକ ଆନ୍ଦୋଳନର ଇତିହାସରେ ଗୋଟିଏ ଯୁଗର ଅବସାନ ଘଟିଲା । ଏହା ଯେତିକି ସତ, ତତୋଽଧିକ ହତାଶଦାୟକ । ତାଙ୍କ ବିହୁନେ ଶୂନ୍ୟସ୍ଥାନ ଅପୂରଣୀୟ ଆହୁରି ବହୁବର୍ଷ ପର୍ଯ୍ୟନ୍ତ ।

ପ୍ରାୟତଃ ଅବନୀ ବରାଳଙ୍କୁ ଯେଉଁମାନେ ଧରିନେଇଥିଲେ ଯେ ସେ ଓଡ଼ିଶାର କେବଳ ଜଣେ ବିଶିଷ୍ଟ ଶିକ୍ଷକ ନେତା ଥିଲେ, ସେମାନଙ୍କ ଅବଧାରଣାକୁ ଅତିକ୍ରମ କରି ସେ ଯେ ଓଡ଼ିଶାର କେତେ କେତେ ଅଧିକ କ୍ଷେତ୍ରକୁ ପ୍ରଭାବିତ କରିଥିଲେ, ତାଙ୍କ ସହ ଭିନ୍ନ ଭିନ୍ନ ସମୟରେ ଓ ଭିନ୍ନ ଭିନ୍ନ କ୍ଷେତ୍ରରେ କାମ କରିଥିବା ସାଥୀ, ସହଯୋଗୀ, ସହକର୍ମୀ ଓ ସହଯୋଦ୍ଧାମାନେ ହିଁ ତାହାର ପ୍ରତ୍ୟକ୍ଷ ମୂକସାକ୍ଷୀ । ହୁଏତ ଏହି ସମୟକାଳ ଭିତରେ ତାଙ୍କ ପୂର୍ବରୁ କେତେକ ଇହଧାମ ତ୍ୟାଗ କରିସାରିଲେଣି । ଯେଉଁମାନେ ଜୀବିତ ସେମାନଙ୍କର ଅନୁଭୂତି କହେ, ଅବନୀ ବରାଳ କେବଳ ଜଣେ ନେତା ନ ଥିଲେ, ଥିଲେ ଜଣେ ବିଚକ୍ଷଣ ମଣିଷ ଯିଏ କି 'ଯୋତା ସିଲେଇ ଠାରୁ ଚଣ୍ଡୀପାଠ' ପର୍ଯ୍ୟନ୍ତ ସବୁକାମ, ସବୁ କଳାର ଦକ୍ଷତା ହାସଲ କରିପାରିଥିଲେ । ସେହି ଅନୁଭୂତିଗୁଡ଼ିକ

ଏବେ ସେମାନଙ୍କ ସ୍ମୃତିପଟରେ ଉଦ୍‌ଭାସିତ ହୋଇ ଉଠୁଛି ।

କଟକରେ ପାଠ ପଢୁଥିଲାବେଳେ ତତ୍‌କାଳୀନ ଛାତ୍ର ଫେଡେରେସନର କାମ :- ପୋଷ୍ଟର ମାରିବା, ଲିଫ୍‌ଲେଟ୍ ବାଣ୍ଟିବା, ଘର ଘର ବୁଲି ଚାନ୍ଦା ଆଦାୟ କରିବା, ଟିଣ ଚୁଙ୍ଗାଧରି ପ୍ରଚାର କରିବା, ପଥପ୍ରାନ୍ତ ସଭା କରିବା, ପୁଣି ପରବର୍ତ୍ତୀ କାଳରେ ଖୋର୍ଦ୍ଧାର ଟି.ଏନ୍. କଲେଜରେ ଅଧ୍ୟାପକ ଥିଲାବେଳେ ସେଠାରୁ ନିୟମିତ କଟକ ଆସି 'ଜନତା ରଙ୍ଗମଞ୍ଚ'ର ଅଭିନେତା, ନିର୍ଦ୍ଦେଶକ ଓ ପରିଚାଳକଭାବେ କାମ କରିବା ହେଉ, ଗଳ୍ପ, ଉପନ୍ୟାସ ଲେଖିବା, ଚିତ୍ର ଆଙ୍କିବା, ଟାଇପ୍ ରାଇଟ୍ କରିବା, ସାଇକ୍ଲୋଷ୍ଟାଇଲ ମେସିନ ଚଳାଇବା, ଚିଠି ଓ ଦାବିପତ୍ର, ପୋଷ୍ଟର ଓ ଲିଫ୍‌ଲେଟ୍ ଲେଖିବା, ଚିଠିରେ ଅଠା ମାରିବା, ପ୍ୟାକେଟ୍ ବାନ୍ଧିବା କାମ ହେଉ ବା ଇପ୍‌ଟାର ଆନ୍ଦୋଳନ ବେଳେ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ବିଭିନ୍ନ କାମ ଭିତରେ ନିଜକୁ ବୁଡ଼ାଇରଖିବା ହେଉ - ଏପରିକି ତାଙ୍କ ଖୋର୍ଦ୍ଧା ବାସଭବନରେ ଥିଲାବେଳେ ନିଜ ବାଡ଼ି ବଗିଚାରେ ଗଛ ଲଗାଇବା, ପାଣିଦେବା, ସେଗୁଡ଼ିକର ଯତ୍ନ ନେବା, ନିଜ ଲୁଗାପଟା ଆଇରନ୍ କରିବା କାମ ହେଉ - ଏହିଭଳି ବହୁ ଛୋଟବଡ଼ କାମ କରିବାରେ ସେ ଥିଲେ କୁଣ୍ଠାହୀନ ପାରଦର୍ଶୀ ମଣିଷଟିଏ । ଏସବୁ ସାଙ୍ଗକୁ ତାଙ୍କ ଅଧ୍ୟାପନା ଜୀବନର ବୃତ୍ତିଗତ ଚେଷ୍ଟା, ଅଧ୍ୟକ୍ଷ ଜୀବନରେ ନିଜ ପ୍ରିୟ କଲେଜର ବିଭିନ୍ନ ଦିଗର ଉନ୍ନୟନ ଓ ବିକାଶ ଦିଗରେ ତାଙ୍କର ଅହରହ ପ୍ରଚେଷ୍ଟା, ଗୁରୁଜଙ୍ଗ ଠାରେ ତାଙ୍କ ନେତୃତ୍ୱରେ ପ୍ରତିଷ୍ଠିତ କିଛିବର୍ଷ ପାଇଁ ବି.ଇଡି. ଓ ସି.ଟି. ତାଲିମ୍ କେନ୍ଦ୍ର, କ୍ରାଫ୍‌ଟ ଶିକ୍ଷାକେନ୍ଦ୍ରର ପରିଚାଳନା, ଖୋର୍ଦ୍ଧାଠାରେ ଅନ୍ୟମାନଙ୍କ ସହ ମିଶି ଜୟୀ ରାଜଗୁରୁଙ୍କ ନାମରେ ହାଇସ୍କୁଲ ପ୍ରତିଷ୍ଠା କରିବା- ଏଗୁଡ଼ିକ ଥିଲା ତାଙ୍କ ବହୁମୁଖୀ ପ୍ରତିଭାର ଗୋଟିଏ ଗୋଟିଏ ଅବିସ୍ମରଣୀୟ ଦୃଷ୍ଟାନ୍ତ ।

ତାଙ୍କ ଦେହାବସାନରେ ଓଡ଼ିଶାର ଗଣ ପ୍ରଚାର ମାଧ୍ୟମ ବା ବିଭିନ୍ନ ବିଶିଷ୍ଟ ବ୍ୟକ୍ତିଙ୍କ ଶୋକବାର୍ତ୍ତା ବା ସ୍ମୃତିଚାରଣରେ ସାଧାରଣଭାବେ ତାଙ୍କ ଜୀବନର କେତୋଟି ବିଶେଷ ଭୂମିକା ସମ୍ପର୍କରେ ମତାମତ ଆସିଛି ଯେ ସେ ଓଡ଼ିଶାର ଅଦ୍ୱିତୀୟ ଶିକ୍ଷକ ନେତା, ଶିକ୍ଷକ ମହାସଂଘର ପ୍ରତିଷ୍ଠାତା, ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପୂର୍ବତନ ରାଜ୍ୟ ସଂପାଦକ, ଜଣେ ବାମପନ୍ଥୀ ବୁଦ୍ଧିଜୀବୀ, ଏକାଧିକ ପୁସ୍ତକର ରଚୟିତା ଓ ଅନୁବାଦକ, ବିଶିଷ୍ଟ ଲେଖକ ଓ ସାହିତ୍ୟିକ ଓ ସର୍ବମାନ୍ୟ ଶିକ୍ଷାବିତ୍ ଥିଲେ ଓ ବିଭିନ୍ନ

ଦେଶ ଭ୍ରମଣ କରିଥିଲେ ଇତ୍ୟାଦି । କିନ୍ତୁ ପୂର୍ବୋକ୍ତ ବହୁମୁଖୀ କର୍ମ ସଂପାଦନାରେ ସେ କିପରି ଧୂରନ୍ଧର ଥିଲେ ବିଷୟଗୁଡ଼ିକ ଯେହେତୁ ତାଙ୍କ ସଂପୂର୍ଣ୍ଣ ଜୀବନାଲେଖ୍ୟ ବିଶଦ୍‌ଭାବେ ଲେଖିବା ପାଇଁ ପ୍ରଯୁଜ୍ୟ, ତେଣୁ ଗଣମାଧ୍ୟମରେ ଆସିପାରିନାହିଁ ।

ଏଠାରେ ବିନମ୍ରତାର ସହ କହିବାକୁ ଚାହୁଁଛି ଯେ ଏହି ଲେଖକ ଆଜିର ପ୍ରୟାତ ନେତା ଅବନୀ ବରାଳଙ୍କ ସହ ପ୍ରାୟ ୩୫ବର୍ଷ ମିଳିମିଶି କାମ କରିଛି ଓ ତାଙ୍କୁ ଅତି ନିକଟରୁ ଦେଖିଛି ଓ ତାଙ୍କ କାମଗୁଡ଼ିକୁ ପରିଖିଛି । ଏଣୁ ନିର୍ବିବାଦରେ ଆଖିଦେଖା ଓ ଅଙ୍ଗେନିଭା ମାତ୍ର କେତୋଟି ଘଟଣାର ସଂକ୍ଷେପ ଅବତାରଣା କରିବାକୁ ଉଚିତ୍ ମନେକରୁଛି ।

ଲେଖକ ଥିଲା ପ୍ରୟାତ ବରାଳଙ୍କର ଜଣେ ସହଯୋଦ୍ଧା । ଓଡ଼ିଶାରେ ପ୍ରଥମେ 'ଶିକ୍ଷକ ସମନ୍ୱୟ ସମିତି' ଆହ୍ୱାନରେ ମିଳିତ ଶିକ୍ଷକ ଆନ୍ଦୋଳନର ଆଦିକାଳରୁ (୧୯୬୯), ପୁଣି ପରବର୍ତ୍ତୀ କାଳରେ 'ଶିକ୍ଷକ ମହାସଂଘ' ଗଠନର ଜନ୍ମ ଲଗ୍ନରୁ (୧୯୭୧) ଲଗାତାର ଭାବେ ଶିକ୍ଷକ ଆନ୍ଦୋଳନର ଜ୍ଞୁଲୁସ୍ ଓ ଫଳଶ୍ରୁତି ସ୍ୱରୂପ ବିଂଶ ଶତାବ୍ଦୀ ଶେଷ ଓ ଏକବିଂଶ ଶତାବ୍ଦୀର ପ୍ରଥମ ଦଶକ ଭିତରେ ଓଡ଼ିଶାର ବେସରକାରୀ ଶିକ୍ଷାନୁଷ୍ଠାନମାନଙ୍କର ମୌଳିକ ଓ ମୁଖ୍ୟ ଦାବିଗୁଡ଼ିକ ହାସଲ ହେଲା ପର୍ଯ୍ୟନ୍ତ ଓ ପୁଣି ସେହି ସୁଦୀର୍ଘ ସମୟକାଳ ମଧ୍ୟରେ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଜାରି ରହିଥିବା ଅଧିକାଂଶ ସମସ୍ୟାଗୁଡ଼ିକର ସମାଧାନ ପର୍ଯ୍ୟନ୍ତ । ଓଡ଼ିଶାରେ କୋଠାରୀ କମିଶନଙ୍କ ସୁପାରିଶ ଭିତ୍ତିରେ ୧୦+୨+୩ ଶିକ୍ଷା ଢାଞ୍ଚାର ପରିବର୍ତ୍ତନ କରାଇବା, ଡିଗ୍ରୀ କଲେଜ୍‌ରୁ +୨ ଶିକ୍ଷାକୁ ପୃଥକ୍ ପରିଚାଳନାଭୁକ୍ତ କରିବା, ଅଷ୍ଟମ ଶ୍ରେଣୀକୁ ଉଚ୍ଚ ପ୍ରାଥମିକ ଶିକ୍ଷାନୁଷ୍ଠାନ ସହ ସଂଯୋଗ କରିବା, ଏପରିକି ପୂର୍ବରୁ ପ୍ରଚଳିତ ଥିବା ଓ ମଝିରେ ଉଠାଇ ଦିଆଯାଇଥିବ ଶିଶୁ ଶ୍ରେଣୀକୁ ପୁନର୍ବାର ପ୍ରାକ୍-ପ୍ରାଥମିକ ଶିକ୍ଷାଭାବେ ପ୍ରାଥମିକ ବିଦ୍ୟାଳୟରେ ଖୋଲିବା, ମାଧ୍ୟମିକ ଶିକ୍ଷ ଶେଷ ପର୍ଯ୍ୟନ୍ତ ଶିକ୍ଷାକୁ ଅବୈତନିକ ଘୋଷଣ କରିବା, ଶିକ୍ଷକ ମହାସଂଘର ତତ୍ତ୍ୱାବଧାନରେ ତଥା ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ବିଜୁ ପଟ୍ଟନାୟକଙ୍କ ପ୍ରୋତ୍ସାହନ ତଥା ରାଜ୍ୟ ପ୍ରଶାସନ ଓ ଗଣ ସଂଗଠନମାନଙ୍କୁ ସାମିଲ କରି ନିରକ୍ଷରତା ଦୂରୀକରଣ ଦିଗରେ ଅଭିଯାନ ନିମିତ୍ତ ରାଜ୍ୟର ସମସ୍ତ ଜିଲ୍ଲା ଓ ଅଞ୍ଚଳରେ 'ଜନଜ୍ୟୋତି' ଜଳାଇବା ଇତ୍ୟାଦି ପ୍ରସଙ୍ଗ ଉପରେ ସଭା, ସେମିନାର, ସିମ୍ପୋସିଅମ୍, କର୍ମଶାଳା ଇତ୍ୟାଦିର ଆୟୋଜନ କରିବା - ଏହି ସମସ୍ତ ଘଟଣା ଉପରେ ସେ ଥିଲେ ଅଗ୍ରଦୂତ

ଓ ଦିଗ୍‌ଦର୍ଶକ। ଏସବୁ ସାଙ୍ଗକୁ ଭାରତ ସରକାରଙ୍କ ଦ୍ୱାରା ସମ୍ବିଧାନ ସଂଶୋଧନ କରାଯାଇ ସମ୍ବିଧାନର ମୌଳିକ ଅଧିକାର ସୂଚୀରେ ଶିକ୍ଷାକୁ ମୌଳିକ ଅଧିକାରଭୁକ୍ତ କରାଇବାରେ ଶିକ୍ଷକ ମହାସଂଘର ଆଭିମୁଖ୍ୟ ଓ ଦାବିକୁ କାର୍ଯ୍ୟକାରୀ କରାଇବା, ଶିକ୍ଷାର ବ୍ୟବସାୟୀକରଣ ବିରୁଦ୍ଧରେ, ଧର୍ମନିରପେକ୍ଷ ଶିକ୍ଷା ପ୍ରଚଳନ ପାଇଁ ଓ ସବୁ ଘରର ଶିଶୁ ଯେପରି ସ୍ୱଳ୍ପ ବ୍ୟୟରେ ଶିକ୍ଷାଲାଭର ସୁଯୋଗ ପାଇପାରିବେ, ସେଥିପାଇଁ ରାଷ୍ଟ୍ର ପରିଚାଳିତ (Public Funded) 'କମନ ସ୍କୁଲ ସିଷ୍ଟମ' ସ୍କୁଲ୍‌ରେ ନାମ ଲେଖାଇବାର ବ୍ୟବସ୍ଥା ପାଇଁ ସେ 'ଶିକ୍ଷକ ମହାସଂଘ' ଫୋରମ୍‌ରୁ କ୍ଳାନ୍ତହୀନ ସଂଗ୍ରାମ ଜାରି ରଖିଥିଲେ ।

ଅଧିକନ୍ତୁ ତତ୍‌କାଳୀନ ଅଖିଳ ଭାରତ କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷକ ଫେଡେରେସନ୍‌ର ସର୍ବଭାରତୀୟ ସମ୍ମିଳନୀ ଓଡ଼ିଶାରେ ଅନୁଷ୍ଠିତ କରାଇ ତାହାର ସାଧାରଣ ସଂପାଦକ ଭାବେ ନିର୍ବାଚିତ ହେବା, ତତ୍‌କାଳୀନ ବିଶ୍ୱ ଶିକ୍ଷକ ମହାସଂଘ ବା 'ଫିଜେ' (FISE) ର ଏକ ଆନ୍ତର୍ଜାତିକ ସେମିନାର କଟକର ବାରବାଟୀ ଷ୍ଟାଡିୟମ ଠାରେ ଅନୁଷ୍ଠିତ କରାଇ ଓଡ଼ିଶାକୁ ବିଶ୍ୱ ଶିକ୍ଷକମାନଙ୍କ ସହ ପରିଚିତ କରାଇବା ସଙ୍ଗେ ସଙ୍ଗେ ଏହି ଲେଖକ ଓ ସାଥୀ ବିବେକାନନ୍ଦ ଦାଶଙ୍କ ଅନୁରୋଧ କ୍ରମେ ଅଖିଳ ଭାରତ ଶିକ୍ଷା ମହାସଂଘ ବା ଏ.ଆଇ.ଏଫ୍.ଇ.ଏ. (AIFEA)ର ସର୍ବଭାରତୀୟ ସମ୍ମିଳନୀ ପାଇଁ ଗଠିତ ଅଭ୍ୟର୍ଥନା କମିଟିର ମୁଖ୍ୟ ତତ୍ତ୍ୱାବଧାରକ ଭାବେ ଅତି ସଫଳତାର ସହ ବାରବାଟୀ ଷ୍ଟାଡିୟମରେ ଅନୁଷ୍ଠିତ କରାଇବାରେ ସେ ଥିଲେ ବିଚକ୍ଷଣ ନେତୃତ୍ୱ । ଏଠାରେ ପ୍ରକାଶ ଥାଉକି ଏ.ଆଇ.ଏଫ୍.ଇ.ଏ. ସହ ପ୍ରୟାତ୍ ନେତା ବରାଳ ସଂପୃକ୍ତ ନ ଥିଲେ । କାରଣ ଏହା ଥିଲା ମୂଳତଃ ଭାରତର ସ୍କୁଲ୍ ଶିକ୍ଷକ ଓ ଶିକ୍ଷାବିତ୍‌ମାନଙ୍କର ସର୍ବପ୍ରାଚୀନ ସଂଗଠନ (୧୯୨୫) । ଓଡ଼ିଶାରୁ 'ଓଷ୍ଟା' ଓ 'ଓଲ୍‌ଷ୍ଟା' ଏହାର ସାମିଲ ସଂଗଠନ (Affiliated) ଭାବେ ସଂଶ୍ଳିଷ୍ଟ ଥିଲେ । ଏହି ସର୍ବଭାରତୀୟ ସଂଗଠନକୁ ଓଷ୍ଟାରୁ ଶ୍ରୀ ବେବେକାନନ୍ଦ ଦାଶ ଓ 'ଓଲ୍‌ଷ୍ଟା' ପକ୍ଷରୁ ଏହି ଲେଖକ ପ୍ରତିନିଧିତ୍ୱ କରୁଥିଲେ ଓ ତାହାର ଜଣେ ଯୁଗ୍ମ ସଂପାଦକ ଥିଲେ । ଓଡ଼ିଶାରେ ଏହି ପ୍ରାଚୀନ ଶିକ୍ଷକ ସଂଗଠନର କେବେ ସର୍ବଭାରତୀୟ ସମ୍ମିଳନୀ ଅନୁଷ୍ଠିତ ହୋଇ ନ ଥିବାରୁ ଶ୍ରୀ ଦାଶ ଓ ଏହି ଲେଖକ ନିଜ ଭିତରେ ଆଲୋଚନା କରି, ନିଷ୍ପତ୍ତି କରି ଉତ୍ତର ପ୍ରଦେଶର କାନପୁର ଠାରେ ଅନୁଷ୍ଠିତ ହୋଇଥିବା କାଉନସିଲ୍ ବୈଠକରେ

ପ୍ରସ୍ତାବ ଆଗତ କରି ଅନୁମୋଦିତ କରାଇ ପାରିଥିଲୁ। ତଦନୁଯାୟୀ ସ୍ୱର୍ଗତ ବରାଳଙ୍କ ତତ୍ତ୍ୱାବଧାନରେ ଏହା ଏକ ଅବିସ୍ମରଣୀୟ ସଫଳ ସମ୍ମିଳନୀରେ ପରିଣତ ହୋଇଥିଲା ।

ଏତଦ୍‌ଭିନ୍ନ ପରବର୍ତ୍ତୀ କାଳରେ ସ୍ୱର୍ଗତ ବରାଳ ସର୍ବଭାରତୀୟ ଶିକ୍ଷକ କୋଅର୍ଡିନେସନ କମିଟିର ମୁଖ୍ୟ ଆବାହକ ଥିଲେ । ଏହି ସଂଗଠନ ପକ୍ଷରୁ ସେତେବେଳେ ଚଣ୍ଡିଗଡ଼ ଠାରେ 'ବିଶ୍ୱଶାନ୍ତି ପାଇଁ ଶିକ୍ଷା' ଶୀର୍ଷକ ଆନ୍ତର୍ଜାତିକ ଆଲୋଚନା ଚକ୍ର ଓ ଦିଲ୍ଲୀଠାରେ 'ଫିଜେ'ର ପରବର୍ତ୍ତୀ ସଂସ୍କରଣର 'ଦିଲ୍ଲୀ ଆନ୍ତର୍ଜାତିକ ସମ୍ମିଳନୀ'ରେ ଏହି ଲେଖକ ତାଙ୍କ ସହ ଯୋଗଦେଇ ତାଙ୍କ ସର୍ବଭାରତୀୟ ଓ ଆନ୍ତର୍ଜାତୀୟ ଶିକ୍ଷକ ନେତାର ଚେହେରାକୁ ନିଜ ଆଖିରେ ଦେଖିଛି ।

ଓଡ଼ିଶାର ଶିକ୍ଷା ସମସ୍ୟାର ସମାଧାନ ପାଇଁ ସମୟର ଆହ୍ୱାନ କ୍ରମେ ରଣକୌଶଳଗତ ଅବସ୍ଥାନ ନେଇ ଶିକ୍ଷକ ମହାସଂଘ ପକ୍ଷରୁ ଓଡ଼ିଶାର ବିଭିନ୍ନ ଛାତ୍ର ସଂଗଠନ ସହ ଆଲୋଚନା କରି ମିଳିତ ସଂଗ୍ରାମର ନେତୃତ୍ୱ ନେବାରେ ଭୂମିକା ପାଳନ କରିଛନ୍ତି ତ ପୁଣି କେତେବେଳେ ଅବିକଳ କେନ୍ଦ୍ରୀୟ ବେତନ ଓଡ଼ିଶାର ଶିକ୍ଷକ/କର୍ମଚାରୀଙ୍କ ପାଇଁ ଲାଗୁକରିବା, ମହଙ୍ଗା ଭତ୍ତା ସମାନ କରିବା, ଗ୍ରେଡ୍ ପେ' ଲାଗୁ କରିବା ପାଇଁ ଓଡ଼ିଶାର ସରକାରୀ କର୍ମଚାରୀମାନଙ୍କ ସଂଗଠନ ସହ ସମ୍‌ଝୌତା କରି ମିଳିତ ଲଢ଼େଇ କରିବାକୁ ପଡ଼ିଛି ।

୧୯୬୯ ମସିହାରୁ ବିଂଶ ଶତାବ୍ଦୀର ଶେଷ ଦଶନ୍ଧି ପର୍ଯ୍ୟନ୍ତ ବିଭିନ୍ନ ବର୍ଷ ଓ ସମୟରେ ତାଙ୍କ ନେତୃତ୍ୱରେ ଶିକ୍ଷକ ମହାସଂଘର କ୍ରମାଗତ ବ୍ୟାପକ ଓ ବଳଶାଳୀ ଆନ୍ଦୋଳନ କେବଳ ରାଜଧାନୀ ଭୁବନେଶ୍ୱରରେ ନୁହେଁ, ସାରା ଓଡ଼ିଶାର ପୁରପଲ୍ଲୀକୁ ପ୍ରସାରିତ ହୋଇ ପ୍ରକମ୍ପନ ସୃଷ୍ଟି କରିଥିଲା ଓ ଅନ୍ୟପକ୍ଷରେ ଓଡ଼ିଶାର ବୁଦ୍ଧିଜୀବୀ, ଶିକ୍ଷାବିତ୍, ବିଭିନ୍ନ ରାଜନୈତିକ ଦଳ, ଟ୍ରେଡ୍ ଇୟୁନିୟନ, ଗଣ ସଂଗଠନ ଓ ସର୍ବୋପରି ପ୍ରଶାସନକୁ ଚଳଚଞ୍ଚଳ ଓ ବ୍ୟାପକ ଭାବେ ପ୍ରଭାବିତ କରିଥିଲା ।

ଅନ୍ୟ ପକ୍ଷରେ ଓଡ଼ିଶାର ବାତ୍ୟା, ବନ୍ୟା ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ବେଳେ ବିଭିନ୍ନ ଆଡୁ ଓ ପଡ଼ୋଶୀ ପଶ୍ଚିମବଙ୍ଗ ରାଜ୍ୟରୁ ରିଲିଫ୍ ସାମଗ୍ରୀ ସଂଗ୍ରହ କରି ଦୁର୍ଗତ ଲୋକମାନଙ୍କ ପାଖରେ ପହଞ୍ଚାଇବାରେ ଶିକ୍ଷକ ମହାସଂଘକୁ ନିୟୋଜିତ କରିଥିଲେ ଓ ନିଜ ନେତୃତ୍ୱରେ କିପରି ତାହାର ପରିଚାଳନା କରାଯାଉଥିଲା ଏହି ଲେଖକ ସାଙ୍ଗରେ ଯାଇ ଅନୁଭବ କରିଛି । ୧୯୮୨ ମସିହାରେ ମହାନଦୀର କରାଳ ବନ୍ୟାରେ

ଧ୍ୱସ୍ତବିଧ୍ୱସ୍ତ ବାଙ୍କୀ ପ୍ରଭୃତି ଅଞ୍ଚଳକୁ ରିଲିଫ୍ ନେଇଯିବା, ମହାନଦୀକୂଳ ଗାଁ' 'ବନ୍ଦାଲୋ'ରେ ରୋଷେଇ କରି ପ୍ରପୀଡ଼ିତ ଲୋକଙ୍କୁ ଖାଇବାକୁ ଦେବା, ପୁଣି ୧୯୯୯ ମସିହାର ମହାବାତ୍ୟାରେ ଜଗତସିଂହପୁର ଜିଲ୍ଲାର ପାରାଦ୍ୱୀପ, ଏରସମା, ପୁରୀ ଜିଲ୍ଲାର କାକଟପୁର, ଅସ୍ତରଙ୍ଗ, ନିମାପଡ଼ା ପ୍ରଭୃତି ଅଞ୍ଚଳକୁ ପଶ୍ଚିମବଙ୍ଗଳାର ଶିକ୍ଷକ ନେତା ମୃଣ୍ମୟ ଭଟାଚାର୍ଯ୍ୟଙ୍କୁ ସାଙ୍ଗରେ ନେଇ ବାତ୍ୟା ବିଧ୍ୱସ୍ତ ଅଞ୍ଚଳକୁ ବୁଲି ଦେଖିବା ଓ ଦୁର୍ଗତଙ୍କୁ ଖାଦ୍ୟସାମଗ୍ରୀ ସମେତ ଲୁଗାପଟା ଓ ଅନ୍ୟାନ୍ୟ ଜିନିଷ ବାଣ୍ଟିବାର ଅନୁଭୂତି ଏହି ଲେଖକର ରହିଛି ।

ଓଡ଼ିଶାରେ ଶିକ୍ଷକ ମହାସଂଘ ପ୍ରତିଷ୍ଠା ଲଗ୍ନରେ ଯେଉଁ ପ୍ରଥିତଯଶା ଶିକ୍ଷକ ନେତାମାନେ ଥିଲେ, ସେମାନଙ୍କ ମଧ୍ୟରୁ ମୁଖ୍ୟ ତିନିଜଣ :- ବନମାଳୀ ବ୍ରହ୍ମଚାରୀ ଓ କୈଳାସଚନ୍ଦ୍ର ମହାପାତ୍ର କେବେଠୁ ଇହଧାମ ତ୍ୟାଗ କରିଥିଲେ, ଅଥଚ ପ୍ରଧାନ ଇଂଜିନ ଚଳାଉଥିବା ଅବନୀ ବରାଳଙ୍କ ଦେହାବସାନ ପରେ ଗୋଟିଏ ଯୁଗର ଅବସାନ ହେଲା ବୋଲି କହିବାକୁ ହେବ । ଏହି ଅବସରରେ ଅବଶ୍ୟ ସ୍ୱୀକାର କରିବାକୁ ପଡ଼ିବ ଯେ ୧୯୬୯ ମସିହାର ଯେଉଁମାନେ ଓଡ଼ିଶାର ବିଭିନ୍ନ ସ୍କୁଲ୍ କଲେଜର ଶ୍ରେଣୀ ପ୍ରକୋଷ୍ଠ ମଧ୍ୟରୁ ଶାନ୍ତ, ନିରୀହ ଶିକ୍ଷକମାନଙ୍କୁ ରଣ ଆହ୍ୱାନ ଦେଇ ଓଜସ୍ୱିନୀ ଭାଷଣରେ ଉଦ୍‌ବୁଦ୍ଧ କରି ରାଜରାସ୍ତାର ପ୍ରତ୍ୟକ୍ଷ ଆନ୍ଦୋଳନରେ ସାମିଲ କରାଇବାରେ, ସ୍ୱର୍ଗତ ବରାଳଙ୍କ ସହ ଯୋଦ୍ଧାଭାବେ ଶିକ୍ଷକମାନଙ୍କ ଚେତନା ସ୍ତରକୁ ଶାଣିତ ଓ ପ୍ରକମ୍ପିତ କରୁଥିଲେ ଓ ଛାମୁଆ ବାହିନୀର ଜଣେ ଜଣେ ସେନାପତି ଭଳି ନେତୃତ୍ୱ ପ୍ରଦାନ କରୁଥିଲେ, ସେମାନଙ୍କ ମଧ୍ୟରୁ ସଂଗ୍ରାମୀ ସାଥୀ ଅନନ୍ତ କର, ରାଜକିଶୋର ପଟ୍ଟନାୟକ, ରାଜକିଶୋର ଭୁଜବଳ, ଅର୍ଜୁନ ଦାଶ, ରବି ଜେନା ପ୍ରମୁଖଙ୍କର ଦେହାନ୍ତ ହୋଇସାରିଛି ଓ ଏବେବି ବୟସର ସାୟାହ୍ନରେ ଥାଇ ମଧ୍ୟ ଶ୍ରୀ ବିବେକାନନ୍ଦ ଦାଶ, ଶ୍ରୀ ପୀତବାସ ବେହୁରିଆ, ଶ୍ରୀ ଦଶରଥି ନାୟକ, ଶ୍ରୀ ଗୟାଧର ରାଉତ, ଶ୍ରୀ ଦୟାନିଧି ସାମନ୍ତରାୟ, ଶ୍ରୀ ଲକ୍ଷ୍ମୀନାରାୟଣ ରାୟସିଂ, ଶ୍ରୀ ଭଗବାନ ଜେନା ପ୍ରମୁଖ ଅନ୍ୟମାନଙ୍କର ସାହସ ଓ ପ୍ରେରଣାର ଉତ୍ସ ହୋଇ ରହିଛନ୍ତି ।

ଦୁର୍ଭାଗ୍ୟର କଥା ଏହି ଯେ ଭାରତବର୍ଷରେ ୧୯୯୦-୯୧ ମସିହା ଠାରୁ ଜଗତିକରଣ, ଉଦାରୀକରଣ ଓ ଘରୋଇକରଣର ନୂଆ ବିଶ୍ୱ ବ୍ୟବସ୍ଥା ଆରମ୍ଭ ହେଲା ଦିନଠାରୁ ଓ ତାହା ଓଡ଼ିଶାର ଶିକ୍ଷା କ୍ଷେତ୍ରକୁ ବ୍ୟାପକଭାବେ ପ୍ରଭାବିତ କରିବା,

ବେସରକାରୀ ଶିକ୍ଷାନୁଷ୍ଠାନ ପାଇଁ ପ୍ରଣୀତ ହୋଇ କାର୍ଯ୍ୟକାରୀ ହେଉଥିବା ଅନୁଦାନ ନିୟମାବଳୀର ପରିବର୍ତ୍ତନ କରିବା, ନୂଆ ସ୍କୁଲ କଲେଜକୁ ଅନୁଦାନ ସଂପୂର୍ଣ୍ଣ ବନ୍ଦ କରିଦେବା ବା ସଂକୁଚିତ କରିଦେବା, ନୂତନ ଶିକ୍ଷକ ନିଯୁକ୍ତି ବନ୍ଦ କରିବା ଆଦି ସରକାରୀ ନିଷ୍ପତ୍ତି ହେଲା ୧୯୯୦ରୁ ଏହା ବିରୁଦ୍ଧରେ ସମସ୍ତ ସ୍ତରର ଶିକ୍ଷକ/କର୍ମଚାରୀଙ୍କ ମିଳିତ ଲଢ଼େଇ ଆହୁରି ଜୋରଦାର୍ ହେବା ପରିବର୍ତ୍ତେ ତାହା ଶିକ୍ଷକମାନଙ୍କୁ ନିଜ ନିଜ ସ୍ତରନେଇ ଅଧିକ ଭାଗ ଭାଗ କରିଦେଇଛି । ସରକାରଙ୍କ ଶିକ୍ଷାମାରଣ, ଶିକ୍ଷକ ମାରଣ ନୀତିର ନୂତନ ସଂସ୍କରଣ ରୂପେ ବ୍ଲକ୍ ଗ୍ରାଣ୍ଟ୍ ସ୍କୁଲ୍ କଲେଜ, ଶିକ୍ଷା ସହାୟକ, ଗଣଶିକ୍ଷକ, ଚୁକ୍ତିଭିତ୍ତିକ ଶିକ୍ଷକ ନିଯୁକ୍ତି ଇତ୍ୟାଦିରେ ସେମାନେ ଘାଣ୍ଟିହୋଇ ଇତସ୍ତତଃ ହେଉଛନ୍ତି, ଟଙ୍କା ଦେଇ କାମ ହାସଲ କରିବାକୁ, ଅନ୍ୟଥା କୋର୍ଟ କଚେରୀ ଦଉଡ଼ିବାକୁ ଶ୍ରେୟ ମନେ କରୁଛନ୍ତି । ସ୍ତର ଭିତ୍ତିରେ ଛୋଟ ଛୋଟ ସଂଗଠନ କରି ଖଣ୍ଡିତ ଆନ୍ଦୋଳନମାନ କରୁଛନ୍ତି ସିନା କିନ୍ତୁ ଐକ୍ୟବଦ୍ଧ ହୋଇ ଶିକ୍ଷକ ମହାସଂଘର ପତାକାତଳକୁ ଆସୁନାହାଁନ୍ତି । ଫଳତଃ ଦାବି ହାସଲ ତ ଦୂରର କଥା ବରଂ ତହିଁର ସୁଯୋଗ ରାଜ୍ୟ ପ୍ରଶାସନ ଓ ସରକାରମାନେ ନେଉଛନ୍ତି ।

ଅନ୍ୟ ପକ୍ଷରେ ଯେଉଁମାନେ ଶିକ୍ଷକ ମହାସଂଘର ଲଗାତର ଆନ୍ଦୋଳନ ଭିତରୁ କ୍ରମାନ୍ୱୟରେ ସମସ୍ତ ଫଳ ପାଇଲେ, ସୁଯୋଗ ସୁବିଧା ଲାଭ କଲେ, ଏବେ ସେମାନେ ଆରାମରେ ଘରେ ବସି ନିଜ ନିଜର ଅବସରକାଳୀନ ସୁବିଧା ସୁଯୋଗ ଲାଭକରି କେବଳ ଭୌତିକ ସୁଖ ସନ୍ତୋଷ ପାଉଁଟିବାରେ ବ୍ୟସ୍ତ ଅଛନ୍ତି । ଶ୍ରମିକ କର୍ମଚାରୀ ଶ୍ରେଣୀର ଆନ୍ଦୋଳନ ଭିତରୁ ନିଜର ଆର୍ଥିକ ଓ ସାମାଜିକ ଅବସ୍ଥାର ପରିବର୍ତ୍ତନ ସାଙ୍ଗକୁ ସାମଗ୍ରିକ ଭାବେ ସାମାଜିକ ବ୍ୟବସ୍ଥାର ମୌଳିକ ପରିବର୍ତ୍ତନ ଦିଗରେ ସେମାନେ ଯେଉଁ ଭୂମିକା ପାଳନ କରିବା କଥା, ତାହା କରୁନାହାଁନ୍ତି ଯାହାକି ସେମାନଙ୍କର ଏକ ଐତିହାସିକ ଦାୟିତ୍ୱ ହୁଅନ୍ତା । ମଧ୍ୟବିତ୍ତ ଶ୍ରେଣୀ ମଣିଷର ସୁବିଧାବାଦୀ ମାନସିକତା ତାଙ୍କୁ ଆବୋରି ପକାଇଛି । ତାଙ୍କରି ନେତୃତ୍ୱରେ ଶତ ସହସ୍ର ଶିକ୍ଷକ/ଶିକ୍ଷା କର୍ମଚାରୀଙ୍କ ଲାଠି, ପାଣିମାଡ଼, ଟିଅରଗ୍ୟାସ୍ ଖିଆ ରକ୍ତଝରା ଆନ୍ଦୋଳନମାନଙ୍କ ଭିତରୁ ଯେଉଁ ସମସ୍ତ ଦାବି ହାସଲ ହୋଇଥିଲା, ମିଳିତ ଐକ୍ୟବଦ୍ଧ ଲଢ଼େଇର ଅଭାବରେ ସରକାରୀ କଳର ଔଦ୍ଧତ୍ୟପୂର୍ଣ୍ଣ ନୀତି ପରିବର୍ତ୍ତନ ବଳରେ ସେଗୁଡ଼ିକ କିପରି କ୍ରମଶଃ ଅପହୃତ ହୋଇଯାଉଛି ଓ ଅନ୍ୟ ପକ୍ଷରେ- ଶିକ୍ଷକମାନଙ୍କ ଚରିତ୍ରରେ ସୁବିଧାବାଦୀ

ମାନସିକତା, ନିଜ ହକ୍ ପାଉ ନ ଥିବା ଶିକ୍ଷକମାନଙ୍କର ଅଲଗା ଅଲଗା ସଂଗଠନ ଓ ପୃଥକ୍ ପୃଥକ୍ ଆନ୍ଦୋଳନ ଓ ସେଗୁଡ଼ିକର ବିଫଳତା ଇତ୍ୟାଦି ଘଟଣା ନିଜ ଜୀବଦ୍ଦଶାରେ କେବେ ଘଟିବ ବୋଲି ଆଶା କରି ନ ଥିଲେ। ଏଣୁ ଆଜକୁ କିଛିବର୍ଷ ହେଲା ଏହି ଦୃଶ୍ୟ ଦେଖି ଦେଖି ତାଙ୍କ ଅନ୍ତରାତ୍ମା ହତୋତ୍ସାହରେ ଭାଙ୍ଗି ପଡୁଥିଲା । ସେଥିପାଇଁ ମାତ୍ର କେଇଦିନ ତଳେ ଗୋଟିଏ ସମ୍ବାଦପତ୍ରରେ ସ୍ପଷ୍ଟଟିଏ ଲେଖି ଜଣାଇଥିଲେ, "ମୋତେ ଆଉ କେହି ଶିକ୍ଷକ ନେତା ବୋଲି ଡାକନାହିଁ, ଶିକ୍ଷକ ନେତା ବୋଲି ସମ୍ବୋଧନ କରନାହିଁ ।" ଏବଂ ଅଧିକାଂଶ ସମୟରେ ଏହି ଲେଖକ ଶିକ୍ଷକ ମହାସଂଘ ଅଫିସରେ ତାଙ୍କ ପାଖରେ ବସି ଶୁଣିଛି ଯେ "ଶିକ୍ଷକ ମହାସଂଘର ସେହି ନାଲିକନା ବ୍ୟାନରଟିକୁ ଆଉ ଟାଙ୍ଗିବାର କୌଣସି ଆବଶ୍ୟକତା ନାହିଁ । ତାକୁ ଓହ୍ଲାଇ ଆଣ ।"

ଏବେ ଆସୁଛି ତାଙ୍କ କର୍ମମୟ ଜୀବନର ଅଭିନ୍ନ ଅନ୍ୟ ଏକ ଦିଗ ଉପରେ ସାମାନ୍ୟ ଅଭାସ ଦେବାପାଇଁ । ଦିନେ ଏହି ଲେଖକ ତା'ର ଶିକ୍ଷକ ଜୀବନର ପ୍ରାରମ୍ଭ କାଳରେ ଅବନୀ ବରାଳଙ୍କୁ ଆଖିରେ ନ ଦେଖି କଲିକତାରୁ ପ୍ରକାଶ ପାଉଥିବା ତତ୍କାଳୀନ ମାସିକ ସାହିତ୍ୟ ପତ୍ରିକା 'ଆସନ୍ତା କାଲି'ର ପୃଷ୍ଠାର ପ୍ରକାଶ ପାଉଥିବା ତାଙ୍କର 'ପ୍ରେମର ଅନ୍ୱେଷଣରେ ଗୋଟିଏ ତରୁଣୀ' ଧାରାବାହିକ ଉପନ୍ୟାସକୁ ପଢ଼ିବାର ସୁଯୋଗ ପାଇଥିଲା । ପରବର୍ତ୍ତୀ କାଳରେ ସେହି ଅବନୀ କୁମାର ବରାଳ ଯେ ଦିନେ ଓଡ଼ିଶାର ଶିକ୍ଷକମାନଙ୍କ ଜୀବନ/ଜୀବିକା ପ୍ରଶ୍ନର ସମାଧାନର ଜଣେ ମୁଖ୍ୟ ବିନ୍ଧାଣି ଓ ପ୍ରବାଦପୁରୁଷରେ ପରିଣତ ହେବେ ଓ ଘଟଣାକ୍ରମେ ଓଡ଼ିଶାର ଲଗାତାର ଶିକ୍ଷକ, ଛାତ୍ର, କର୍ମଚାରୀ ଆନ୍ଦୋଳନର ସମସ୍ତ ପର୍ଯ୍ୟାୟରେ ଏହି ଲେଖକ ଜଣେ ସହଯୋଗୀ, ସହଯୋଦ୍ଧାଭାବେ, ମହାସଂଘର ଯୁଗ୍ମ ସଂପାଦକ ଭାବେ ଅବସର ନେବା ପର୍ଯ୍ୟନ୍ତ ଓ ଅନ୍ୟମାନଙ୍କୁ ସୁଯୋଗ ଦେଇ ନିଜେ ନେତୃତ୍ୱରୁ ବିଦାୟ ନେବା ପର୍ଯ୍ୟନ୍ତ ତାଙ୍କ ସହ ମିଶି କାମ କରିବା, ତାଙ୍କୁ ଅତି ନିକଟରୁ ଦେଖିବା, ନିଷ୍ପତ୍ତି ନେବା, ଲଢ଼େଇ କରିବା ଇତ୍ୟାଦି ମଧ୍ୟ ଦେଇ ଗୋଟିଏ ପରିବାରର ସଦସ୍ୟଭାବେ, ହାନିଲାଭ ସବୁକଥାରେ ନିଜକୁ ସାମିଲ କରିଛି । ପୁଣି କେତେବେଳେ ସମୟ କରି ସ୍ୱର୍ଗତ ବରାଳଙ୍କ 'ଅପରାହ୍ନର ଛାଇ', 'ମଞ୍ଜ କନ୍ୟାର କାହାଣୀ', 'ମାୟାବିନୀ ରାତ୍ରି' ଉପନ୍ୟାସ, ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ତାଙ୍କର କିଛି ଗଳ୍ପ, ଋଷୀୟ ଲେଖକ ଷ୍ଟୋଭସ୍କିଙ୍କ 'ଇସ୍ପାତ' ଉପନ୍ୟାସର ଅନୁବାଦ, ତାଙ୍କର ଜାପାନ ଦେଶ ଭ୍ରମଣର

ଅନୁଭୂତିରୁ ରଚିତ "ହିରୋସୀମା-ନାଗାସାକୀ-ଆଜ ନୁହେଁ, ଆଉ ନୁହେଁ" ପ୍ରଭୃତି ପୁସ୍ତକ କିଣି ପଢ଼ିବାର ସୁଯୋଗ ପାଇଛି । ସେଥିରୁ ଏହି ଲେଖକର ଉପଲବ୍ଧି ହୋଇଥିଲା ଯେ ସ୍ୱର୍ଗତ ଅବନୀ କୁମାର ବରାଳ ଯଦି ତାଙ୍କ ଜୀବନର ଦିଗ ପରିବର୍ତ୍ତନ ନ କରି ଓଡ଼ିଆ ଭାଷା ଓ ସାହିତ୍ୟର ଜଣେ ଅଧ୍ୟାପକ ଭାବରେ କେବଳ ସୃଜନଶୀଳ, ସାରସ୍ୱତ ସାଧନାରେ ନିଜକୁ ସମର୍ପିତ କରିଥା'ନ୍ତେ, ଆଜି ହୁଏତ ସେ ଜଣେ ଅ ହୁରି ଅଧିକ ପ୍ରତିଷ୍ଠାବାନ୍, ପ୍ରଭାବ ବିସ୍ତାରକାରୀ ଲେଖକ, ଗାଳ୍ପିକ, ଔପନ୍ୟାସିକ ଭାବେ ଯଶ, ସମ୍ମାନ, ଉପାଧି ଓ ପୁରସ୍କାରରେ ବିମଣ୍ଡିତ ହୋଇପାରିଥାନ୍ତେ, କିନ୍ତୁ ଅପର ପକ୍ଷରେ ବିଗତ ପ୍ରାୟ ପଚାଶ ବର୍ଷ ଧରି ଓଡ଼ିଶାର ଶିକ୍ଷାକ୍ଷେତ୍ର ଓ ଶିକ୍ଷା ଆନ୍ଦୋଳନ କ୍ଷେତ୍ରକୁ ସର୍ବାଧିକ ପ୍ରଭାବିତ କରିଥିବା ମଣିଷଟି ଜନପ୍ରିୟ 'ଅବନୀ ବରାଳ'ଙ୍କର ଆବିର୍ଭାବ ହୋଇପାରି ନ ଥା'ନ୍ତା ।

ଆମ ସମସ୍ତଙ୍କ ଭିତରେ ନିଆରା ମଣିଷଟି ଥିଲେ ସ୍ୱର୍ଗତ ବରାଳ । ତାଙ୍କ କଥା କହିବାର ଭାଷା, ଲେଖିବାର ଭାଷା ଥିଲା ନିଆରା । ସରଳ, ତରଳ, ମଜାଦାର ମଣିଷଟି ସିଏ । ଗାଉଁଲୀ ଓ ସହରୀ ଉଭୟ ଚଳଣିରେ ଅଭ୍ୟସ୍ତ ଥିଲେ ସେ । ଯାହା ମିଳୁଥିଲା ଖାଉଥିଲେ । ପୋଷାକଥିଲା ଧୋତି, ପଞ୍ଜାବୀ, ବେଢାଣ, କାନ୍ଧ ଗାମୁଛା । ଶୀତଦିନେ ଜହର, କୋଟ, ଟୋପି, ଚାଦର । ବିଭିନ୍ନ ଦେଶ ଭ୍ରମଣ କରିଥିଲେ ମଧ୍ୟ 'ଭାରତୀୟ ଜୀବନବୋଧ' ଶବ୍ଦଟିକୁ ସେ ନିଜ ଜୀବନଚର୍ଯ୍ୟାରେ ପ୍ରୟୋଗ କରୁଥିଲେ । ସଂଗ୍ରାମର ଦୀର୍ଘ ଯାତ୍ରା ପଥରେ ବହୁ କଠିନ ଓ ପ୍ରତିକୂଳ ପରିସ୍ଥିତିକୁ ସାମ୍ନା କରିବାର ତାଙ୍କର ଅସୀମ ସାହସ ଥିଲା, କେବେ ବି ସେ ଦବି ଯାଉ ନ ଥିଲେ । ପ୍ରତିପକ୍ଷକୁ ମୁହଁତୋଡ଼ ଜବାବ୍ ଦେବାରେ ସେ ପଛଘୁଞ୍ଚା ଦେଉ ନ ଥିଲେ । ଶିକ୍ଷକ ବନ୍ଧୁମାନଙ୍କ ପାଖରେ ତାଙ୍କର ଥିଲା ସାଥୀ ସୁଲଭ ସ୍ନେହ ଓ ବ୍ୟବହାର । ଚିର ହସ ହସ ସହଜ ଚାହାଁଣି । କେବେ ବି ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ, ଅଯଥା ବଡ଼ପଣିଆ ବା ନେତାଗିରୀ ଦେଖାଇବା କେହି ଦେଖିନାହିଁ । ଆଜି ସେହି ସହଜ ଉଜ୍ଜଳ ମୁହଁଟି ଆମ ସମସ୍ତଙ୍କ ଦୃଷ୍ଟିପଥରୁ ଅନ୍ତର୍ହିତ ହୋଇଗଲା ଯାହା ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ଥିଲା ଅତି ଜୀବନ୍ତ, ଯୁବସୁଲଭ ଓ ବାକ୍‌ସ୍ଫୁଟ । ତାଙ୍କ ତିରୋଧାନରେ ଓଡ଼ିଶାର ଶିକ୍ଷା ଓ ଶିକ୍ଷକ ଆନ୍ଦୋଳନର ଇତିହାସରୁ ଗୋଟିଏ ସବୁଠାରୁ ବଳି ଉଜ୍ଜ୍ୱଳ, ସ୍ମରଣୀୟ ଓ ସଂଘର୍ଷମୟ ଅଧ୍ୟାୟ (Chapter)ର ପରିସମାପ୍ତି ଘଟିଲା ।

ଏବେ ଉତ୍ତର ଦାୟାଦମାନଙ୍କ କର୍ତ୍ତବ୍ୟ, ଦାୟିତ୍ୱ ଓ ଅଙ୍ଗୀକାରବଦ୍ଧତା ଭିତରୁ ପରବର୍ତ୍ତୀ ଅଧ୍ୟାୟ ଯୋଡ଼ା ହେବାକୁ ବାକି ରହିଲା ।

ଏବେ ଶିକ୍ଷକ ମହାସଂଘର ସେହି ନାଲିକନା ବ୍ୟାନରଟି ରହିବ କି ନାହିଁ, ସଚିବାଳୟମାର୍ଗ ଭୌମ ନଗରର ସେହି ଶିକ୍ଷକ ମହାସଂଘ ଅଫିସ୍ ଚାଲିବ କି ନାହିଁ, ମିଳିତ ବୈଠକ, ସଭାସମିତି, ସେମିନାର, ସମ୍ମିଳନୀ, ଆନ୍ଦୋଳନ ଓ ସଂଗଠନ ମିଳିତ ନେତୃତ୍ୱ ଓ ସମ୍ମିଳିତ ସ୍ୱର ଝଂକାର ତୋଳିପାରିବ କି ନାହିଁ ? – ଅନେକଙ୍କ ପାଖରେ ଆଜି ଏହାହିଁ ପ୍ରଶ୍ନବାଚୀ ।

ଶିକ୍ଷକ ମହାସଂଘର ଯେଉଁ ତିନିଗୋଟି ପ୍ରମୁଖ ମୂଳ ସାମିଲ ସଂଗଠନ – ଓଷ୍ଟା, ଓଲ୍‌ଷ୍ଟା ଓ କଲେଜ ଶିକ୍ଷକ ସଂଘ ରହିଛନ୍ତି-ରହିବେ। ସାଥୀ, ସମର୍ଥକମାନେ କେତେ ଆସିବେ ଓ ଯିବେ । କିନ୍ତୁ ଆଜିର ଏହି ଅସହଣୀୟ ଶୂନ୍ୟ ବେଳାରେ ଯଦି ଉଲ୍ଲିଖିତ ସଂଗଠନଗୁଡ଼ିକ ସମେତ ଅନ୍ୟ ଛୋଟବଡ଼ ସାମିଲ ସଂଗଠନଗୁଡ଼ିକର ନେତୃମଣ୍ଡଳୀ ବଜ୍ରଶପଥ ନେବେ ଯେ ଶିକ୍ଷକ ଜାତିର ତ୍ରାଣକର୍ତ୍ତା ଅବନୀ ବରାଳଙ୍କ ଅମୂଲ୍ୟ ସ୍ମୃତିକୁ ଚିରଅମ୍ଳାନ ଓ ଜାଜ୍ୱଲ୍ୟମାନ ରଖିବା ପାଇଁ, ମିଳିତ ନେତୃତ୍ୱ ଦ୍ୱାରା ତା'ର ବୈପ୍ଳବିକ ପରମ୍ପରାକୁ, ସୃଜନଶୀଳ କାର୍ଯ୍ୟଧାରାକୁ, ତା'ର ସ୍ୱପ୍ନ ଓ ସଂଭାବନାକୁ ଆହୁରି ବଳିଷ୍ଠ, ପ୍ରସାରିତ, ବର୍ଣ୍ଣିଳ ଓ ଆଭାଦୀପ୍ତ କରିପାରିବେ- ତାହା ହେବ ଆମର ପ୍ରିୟ ପ୍ରୟାତ ନେତା ଅବନୀ ବରାଳଙ୍କ ପ୍ରତି ଶ୍ରେଷ୍ଠ ସମ୍ମାନ ଓ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ଆମର ସର୍ବାଧିକ ପ୍ରିୟ ନେତା, ସ୍ରଷ୍ଟା ଓ ଦ୍ରଷ୍ଟା ଅବନୀ ବରାଳ- ଅମର ରହେ ।

* * *

* ପୂର୍ବତନ ଯୁଗ୍ମ ସଂପାଦକ, ଶିକ୍ଷକ ମହାସଂଘ

ପ୍ରଗତି ବିହାର

ମଙ୍ଗଳପୁର, ଜିଲ୍ଲା-ଯାଜପୁର

# ଅବନୀ ବରାଳ ଏକ ମହାନ୍ ଅନୁଷ୍ଠାନ

• ଶ୍ରୀ ସୁରେଶ ଚନ୍ଦ୍ର ବିଶ୍ୱାଳ

ଦୁଇହଜାର ତେର ମସିହା ନଭେମ୍ବର ମାସ ସାତ ତାରିଖ ଦିନ ଗୋଟାଏ ବାଜିବାକୁ ଦଶମିନିଟ୍ ବାକିଥାଏ । ହଠାତ୍ କଟକ ସଂଘ ଅଫିସ୍‌ରୁ ଦୂରବାର୍ତ୍ତା ଆସିଲା - ଅବନୀ ବାବୁଙ୍କ ବିଷୟରେ ତୁମ ପାଖରେ କ'ଣ ଖବର ଅଛି ? ଏମିତି କ'ଣ କହୁଛନ୍ତି ବଂଧୁ ? କୃପାସିନ୍ଧୁ ବାବୁଙ୍କୁ କହିଲି । ସେ କହିଲେ, ତୁମ ଖୋର୍ଦ୍ଧା ଆଡ଼େ କିଛି ଖବର ପହଞ୍ଚି ନାହିଁ ? ପୁଣି କହିଲେ, ତୁରନ୍ତ ଖବର ସଂଗ୍ରହ କରି ଆମକୁ ଜଣାଅ । ସଙ୍ଗେ ସଙ୍ଗେ ତାଙ୍କ ବୋହୂଙ୍କୁ ପଚାରି ବୁଝିଲୁ ସେ ଆଉ ନାହାଁନ୍ତି ମୁଁ ଅଧଘଣ୍ଟା ହେବ ଖୋର୍ଦ୍ଧା ଛାଡ଼ି ସାରିଲିଣି । ତାଙ୍କ ବଡ଼ ବୋହୂଙ୍କ ଠାରୁ ବାଷ୍ପରୁଦ୍ଧ କଣ୍ଠରେ ଏ କଥା ଶୁଣିବା ପରେ ପରେ ତାଙ୍କର ଅତ୍ୟନ୍ତ ଘନିଷ୍ଠ ବନ୍ଧୁ ଡଃ ଲକ୍ଷ୍ମୀନାରାୟଣ ରାୟସିଂହ ଦୂରବାର୍ତ୍ତାରେ କହିଲେ, ମୁଁ ଏପରି ଏକ ଖବର ଶୁଣୁଛି କେଉଁଠି ଅଛ ଆସ ଭୁବନେଶ୍ୱର ଯିବା । ପୁଣି ଖବର ପଠାଇଲେ ଦୁଇ ତିନି ମିନିଟ୍ ମଧ୍ୟରେ ଆମ ଘରେ ଆସି ପହଞ୍ଚ ଭୁବନେଶ୍ୱର ଯିବା । ଗୟାଧର ରାଉତ ଏକ କାର ଆଣି ପହଞ୍ଚିଛନ୍ତି । ସଙ୍ଗେ ସଙ୍ଗେ କଟକ ସଂଘ ଅଫିସ୍‌କୁ ଜଣାଇଲୁ ଘଟଣା ସତ୍ୟ । ଅବନୀବାବୁ ଆଉ ଇହଧାମରେ ନାହାଁନ୍ତି । ସମୟ ସେତେବେଳକୁ ଦେଢ଼ଟା ହେବ ।

ବିଦ୍ୟାଳୟରେ ମଧ୍ୟାହ୍ନ ଭୋଜନ ଅଧା ହୋଇଥିବାରୁ ସହକର୍ମୀଙ୍କୁ କହିଲି ପିଲାଙ୍କୁ ଏକାଠି କରି ନୀରବ ପ୍ରାର୍ଥନା କରାଇ ବିଦ୍ୟାଳୟକୁ ଛୁଟି କରିଦେବ । ବାହାରିଲି ଭୁବନେଶ୍ୱର । ପରଦିନ ଆସି ବିଦ୍ୟାଳୟ ଅଫିସ୍ ଟେବୁଲ୍ ଉପରେ ଦେଖିଲି ପେନ୍ ଠାଏ, ପେନ୍‌କ୍ୟାପ୍ ଠାଏ, ଅଧା ଖୋଲା ହୋଇଥିବ ଡ୍ରୟାରଟି ମଧ୍ୟ ସେହିପରି ଅଛି । ଆଉ ଅଫିସ୍ ଟେବୁଲ୍ ପାଖକୁ ଗଲିନାହିଁ । କାରଣ ଅନ୍ୟାନ୍ୟ ଶିକ୍ଷକମାନେ କହିଲେ -ଆପଣ ମୁର୍ଦ୍ଦାର ଛୁଆଁ । ଖବର ପାଇଲା ପରେ ମୁଣ୍ଡଟା ବିଚଳିତ ହୋଇଗଲା ଏବଂ ମାନସିକ ଅବସ୍ଥା ଠିକ୍ ରହିଲା ନାହିଁ । ପାଖରେ ଯାହାଙ୍କର ଠିଆ ହୋଇ ପଦେକଥା ସିଧା କରି କହିପାରେ ନାହିଁ, ପାଞ୍ଚ ପଦରେ ପଦେକଥା ବାହାରେ, ଆଖିକୁ ଆଖି ସିଧାକରି ଚାହିଁପାରେ ନାହିଁ । କ'ଣ କହୁଛୁ ବଡ଼ ପାଟିରେ କହ

ବାରମ୍ବାର କହନ୍ତି । ଶେଷରେ ହସି ହସି କୁହନ୍ତି -ଆରେ କ'ଣ ହେଲା କହୁନୁ । ଦାଶରଥି, ହେ ରାୟସିଂହ ସେ କ'ଣ କହୁଛି ତା' କଥା ବୁଝିକରି ମୋତେ କହିବକି ? ତାଙ୍କ ପାଇଁ ମୁଁ ଲେଖିବି ଭାବିପାରୁନି । ଏକାଧାରାରେ ସେ ମୋର ଗୁରୁ ଏବଂ ବି.ଇଡି. ପାସ୍ କଲାପରେ ଚାକିରି ଖଣ୍ଡେ ଦେଇ ସମାଜରେ ଜଣେ ଶିକ୍ଷକ ହେବାପାଇଁ ଯାହାଙ୍କର ଅବଦାନ ଚିରସ୍ମରଣୀୟ, ତାଙ୍କ ପାଇଁ କ'ଣ ଲେଖିବି । ତାଙ୍କ ସହଧର୍ମିଣୀ ମଧ ରାଜଧାନୀ ମହାବିଦ୍ୟାଳୟରେ ପାଠ ପଢ଼ିଲା ବେଳେ ମୋର ଗୁରୁ ଏବଂ ତାଙ୍କ ସୁପାରିଶ କ୍ରମେ ମୁଁ ଆଜି ଜୟୀ ରାଜଗୁରୁ ବିଦ୍ୟାଳୟର ଜଣେ ଶିକ୍ଷକ । ସାରଙ୍କ ପାଇଁ ଶେଷ ଶ୍ରଦ୍ଧାଞ୍ଜଳି ମୁଠାଏ ଦେଉଛି ।

ତାଙ୍କ ଜୀବିତାବସ୍ଥାରେ ଗୁରୁ ଦକ୍ଷିଣା ଦେଇପାରିନାହିଁ । ସବ ସତ୍କାର ପୂର୍ବରୁ କେକେଇ ପାଇଁ ବାଉଁଶ ହଣା ହେଲା ପରେ ଦେବହରି ଭାଇ (ଆସ୍କା) କହିଲେ, "ଆରେ ସୁରେଶ, କାହିଁକି ଠିଆ ହୋଇଛୁ । ଆସେ କୋକେଇ ବନ୍ଧାହେବ, ମୋ ସାଙ୍ଗରେ ମିଶି ପାଳ ଦଉଡ଼ି ବୋଳେ । ''ପାଳଦଉଡ଼ି ଦିଖଣ୍ଡ ବୋଳିଲା ପରେ କହିଲେ -ଆରେ ପାଳରେ ଗୋଟେ ଅଟା ତିଆରି କରିଦିଏ । ମନେ ମନେ ଭାବିଲି, ସାରେ ବୋଧେ ସ୍ୱର୍ଗପୁରରୁ ଥାଇ କହୁଛନ୍ତି -ତୋ ପାଇଁ ଏତେ କରିଥିଲି, କ'ଣ ହେଲେ କରିଦେଇ ଋଣ ମୁକ୍ତ ହୋଇଯାଆ ।

ଅବନୀ ବରାଳ ତାଙ୍କ ଜୀବିତାବସ୍ଥାରେ ଶିକ୍ଷକଙ୍କ ପାଇଁ, ଛାତ୍ରଛାତ୍ରୀଙ୍କ ପାଇଁ, ଶିକ୍ଷାନୁଷ୍ଠାନ ପାଇଁ, ଚାଷି ମୂଲିଆଙ୍କ ପାଇଁ, ଶ୍ରମିକଙ୍କ ପାଇଁ, କର୍ମଚାରୀମାନଙ୍କ ପାଇଁ, ସାହିତ୍ୟ ପାଇଁ, ରଙ୍ଗମଞ୍ଚ ଓ କଳାକାରମାନଙ୍କ ପାଇଁ, ପ୍ରାଣନାଥ ମହାବିଦ୍ୟାଳୟ ପାଇଁ ଯାହାସବୁ କରିଯାଇଛନ୍ତି ତାହା ଭୁଲିହେବ ନାହିଁ । ଏହା ବ୍ୟତୀତ ଖୋର୍ଦ୍ଧାରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ପାଇଁ ଯାହା କରିଛନ୍ତି ସେ ବିଷୟରେ ସମ୍ୟକ୍ ଆଲୋକପାତ ନ କଲେ ମନ ଊଣାହେଲା ପରି ଲାଗୁଛି ।

ଖୋର୍ଦ୍ଧା ଗୁରୁଜଙ୍ଗ ଗ୍ରାମକୁ ଲାଗି ଯେଉଁ ଏକ ବିରାଟ ଶ୍ମଶାନ ଥିଲା ତା' ପାଖ ପଡ଼ିଆରେ ସେ ପ୍ରତିଷ୍ଠା କରିଥିଲେ 'ଶିକ୍ଷକ ମହାସଂଘ ଶିକ୍ଷା ପ୍ରତିଷ୍ଠାନ' । ଏଠାରେ ଆଗରୁ ମାଇନର୍ ସ୍କୁଲ୍‌ଟିଏ ଓ ହାଇସ୍କୁଲ୍‌ଟିଏ ଥିଲା । ଏହା ପାଖକୁ ଲାଗି ତାଙ୍କ ଦ୍ୱାରା ଗଢ଼ି ଉଠିଥିବା ଅନୁଷ୍ଠାନରେ ଛୋଟ ପିଲାଙ୍କ ପାଇଁ ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଏକ ବିଦ୍ୟାଳୟ । ଯାହାର ନାମ 'ଶିଶୁ ବିହାର' । ତା' ପରେ ମାଟ୍ରିକ ପାସ୍ ପିଲାଙ୍କ

ପାଇଁ ସି.ପି.ଏଡ୍ ବି.ଏ. ପାସ୍ କରିଥିବା ପିଲାଙ୍କ ପାଇଁ ବି.ପି.ଏଡ୍ ଏବଂ ବି.ଏଡ୍. ତାଲିମ୍ କେନ୍ଦ୍ର, ସକାଳୁ ସଞ୍ଜଯାଏଁ ଏଠାରେ ପାଠପଢ଼ା ଏବଂ ଖେଳ କସରତ ଚାଲେ । ଉପଯୁକ୍ତ ତାଲିମ୍ ପାଇଁ ଭଲ ଖେଳ ଶିକ୍ଷକ ଓ ବି.ଏଡ୍. ତାଲିମ୍ ଶିକ୍ଷକ ବାହାରିଲେ ଶିକ୍ଷାର ବିକାଶ ହେବା ସହିତ ଶାରୀରିକ ଗଠନ ଠିକ୍ ରୂପେ ହୋଇପାରିବ ତାହା ତାଙ୍କର ଉଦ୍ଦେଶ୍ୟ ଥିଲା । କିଛିଦିନ ଏସବୁ ଅନୁଷ୍ଠାନ ଚାଲିଲା ପରେ ଏହି ସବୁ ଅନୁଷ୍ଠାନ ସରକାରଙ୍କ ଚକ୍ରାନ୍ତରୁ ବନ୍ଦ ହୋଇଗଲା । କାରଣ ଏକା ସମୟରେ ଗଢ଼ିଉଠିଥିବା ବାଲିଆପାଳ ଓ କଟକ ତିଗିରିଆର କ୍ରୀଡ଼ା ତାଲିମ୍ ଅନୁଷ୍ଠାନ ଅଦ୍ୟାବଧି ଥିବା ବେଳେ ଏଠିକାର ଅନୁଷ୍ଠାନ ପିଲାମାନଙ୍କୁ ସରକାର ପରୀକ୍ଷା ଦେବାକୁ ଅନୁମତି ପ୍ରଦାନ ନ କରିବାର ଭିତିରି ଉଦ୍ଦେଶ୍ୟ ଭିନ୍ନ । ଶିକ୍ଷକମାନଙ୍କ ଆନ୍ଦୋଳନ ପାଇଁ ଏଠାରୁ ପ୍ରଚୁର ପଇସା ଆସୁଛି । ଏ ଅନୁଷ୍ଠାନ ବନ୍ଦ ନ କଲେ ଶିକ୍ଷକମାନଙ୍କ ଆନ୍ଦୋଳନ ଆହୁରି ଉଗ୍ରରୂପ ନେବ -ଏ ଧାରଣା ସରକାରଙ୍କୁ କେତେକ ଲୋକ କୁମନ୍ତ୍ରଣା ଦେଲେ । ସେଠାରେ ଏବେ ଖାଲି "ଶିଶୁ ବିହାର" ଅନୁଷ୍ଠାନଟି ଚାଲୁଥିବାବେଳେ କିଛି ଅଂଶରେ ଗୁରୁଜଙ୍ଗ ବାଳିକା ଉଚ୍ଚ ବିଦ୍ୟାଳୟ ଚାଲୁଛି । ଅନ୍ୟାନ୍ୟ ଅନୁଷ୍ଠାନ ସବୁ ବନ୍ଦ । ଅବଶ୍ୟ ବିଜୁପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଏଠାରେ ଏକ ସମରକଳା ଏକାଡ଼େମୀ ଚାଲୁଥିଲା । ତାହା ମଧ୍ୟ କାଳକ୍ରମେ ବନ୍ଦ ହୋଇଗଲା । ସର୍ବସମ୍ମତ କ୍ରମେ ସରକାରୀ କିମ୍ବା ଶିକ୍ଷକ ମହାସଂଘ ତରଫରୁ ଶ୍ରୀଯୁକ୍ତ ବରାଳଙ୍କ ସ୍ମୃତି ଉଦ୍ଦେଶ୍ୟରେ କିଛି ଅନୁଷ୍ଠାନ ଖୋଲାଯାଇ ପାରିଲେ କିମ୍ବା ଛୋଟ ପିଲାଙ୍କ ପାଇଁ ଚାଲୁଥିବା ଅନୁଷ୍ଠାନକୁ ଶ୍ରୀଯୁକ୍ତ ବରାଳଙ୍କ ନାମରେ ନାମିତ କରି ଏହାର ଦେଖାଶୁଣା କରାଯାଇପାରିଲେ ସେ ସବୁଦିନ ପାଇଁ ମନେ ରହନ୍ତେ ଓ ତାଙ୍କ ଅଧୁରା ସ୍ୱପ୍ନ ସାକାର ହୋଇପାରନ୍ତା ।

କହିବାର ଉଦ୍ଦେଶ୍ୟ ବର୍ତ୍ତମାନ ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟର ନାମ ପ୍ରଥମେ ଖୋର୍ଦ୍ଧା କଲେଜ୍ ଥିଲା ଯଦିଓ ଏହା ପ୍ରାଣନାଥ ପଟ୍ଟନାୟକଙ୍କ ଦ୍ୱାରା ଗଢ଼ିଉଠିଥିଲା । ପ୍ରାଣନାଥ ପଟ୍ଟନାୟକଙ୍କ ଦେହାନ୍ତ ପରେ ଖୋର୍ଦ୍ଧ. କଲେଜର ନାମ ପ୍ରାଣନାଥ ମହାବିଦ୍ୟାଳୟ କରିବାକୁ ସର୍ବସମ୍ମତ ପ୍ରସ୍ତାବ ଗୃହୀତ ହୋଇ ସରକାରଙ୍କୁ ଜଣାଇ ଦିଆଯାଇଥିଲା । ଏହା ସତ୍ୟ ଯେ ଆଜିର ନେତାମାନେ ଯେପରି ତାଙ୍କ ନାମରେ, ତାଙ୍କ ବାପା ମାଆଙ୍କ ନାମରେ ଅନୁଷ୍ଠାନ ଗଢ଼ି ସାହାଯ୍ୟ ସହଯୋଗ ଏବଂ ଅର୍ଥଦାନ କରୁଛନ୍ତି, ଛାଇ ଥାଉ ଥାଉ ସାମ୍ୟବାଦରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନେ

ତାଙ୍କ ନାମରେ କୌଣସି ଅନୁଷ୍ଠାନ ଜୀବିତାବସ୍ଥାରେ କରିବାକୁ ଚାହାଁନ୍ତି ନାହିଁ । ନିଜ ଅପେକ୍ଷା ସେ ସମାଜକୁ ଅଧିକ ପ୍ରାଧାନ୍ୟ ଦିଅନ୍ତି ।

ଶ୍ରୀଯୁକ୍ତ ବରାଳ ତାଙ୍କର ରାଜନୈତିକ ଗୁରୁ ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକଙ୍କ ଅତୃପ୍ତ ଆତ୍ମାର ସଦ୍‌ଗତି କରିବାକୁ ତାଙ୍କ ଜୀବଦଶାରେ ସକ୍ଷମ ହୋଇପାରିଛନ୍ତି । ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକ ଦେହାନ୍ତ ପୂର୍ବରୁ କଲିକତାରେ ଚିକିତ୍ସିତ ହେଉଥିବା ବେଳେ ଶ୍ରୀଯୁକ୍ତ ବରାଳ ଏବଂ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଡଃ ଲକ୍ଷ୍ମୀନାରାୟଣ ରାୟସିଂହଙ୍କୁ କହିଥିଲେ -ଯେତେ ଅନୁଷ୍ଠାନ ଗଢ଼ିଥିଲି ଖୋର୍ଦ୍ଧା କଲେଜ ପାଖରେ ୧୯୬୦ ମସିହାରୁ ଗଢ଼ିଥିବା ଜୟୀ ରାଜଗୁରୁ ବିଦ୍ୟାଳୟଟିକୁ ସଂପୂର୍ଣ୍ଣ କରିପାରିଲି ନାହିଁ । ଓଡ଼ିଶା ଫେରିବା ପୂର୍ବରୁ  ପ୍ରାଣନାଥ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ଜୟୀରାଜଗୁରୁ ବିଦ୍ୟାଳୟକୁ ସାକାର ରୂପ ଦେବାକୁ ଯାଇ ଏହି ଶିକ୍ଷକ ମହାସଂଘ ଶିକ୍ଷା ପ୍ରତିଷ୍ଠାନରୁ ବି.ଏଡ୍. ତାଲିମ ପାଉଥିବା ଛାତ୍ରଛାତ୍ରୀମାନଙ୍କ ପାଇଁ ଏକ ପ୍ରାକ୍ଟିସିଂ ବିଦ୍ୟାଳୟ ସ୍ୱରୂପ ଶ୍ରୀଯୁକ୍ତ ବରାଳ ଜୟୀ ରାଜଗୁରୁ ଉ.ପ୍ରା. ବିଦ୍ୟାଳୟ ଏବଂ ଜୟୀ ରାଜଗୁରୁ ଉଚ୍ଚ ବିଦ୍ୟାଳୟକୁ ସାକାର ରୂପ ଦେଇଛନ୍ତି । ଜୟୀରାଜଗୁରୁ ବିଦ୍ୟାଳୟ ସମୂହର ପୁନଃନିର୍ମାତା ଭାବେ ଶ୍ରୀଯୁକ୍ତ ବରାଳ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବେ । ଏହି ବିଦ୍ୟାଳୟର ପ୍ରତିଷ୍ଠାତା ସଭାପତି ରହି ଶ୍ରୀଯୁକ୍ତ ରାୟସିଂହଙ୍କୁ ସଂପାଦକ ରୂପେ ରଖି ବିଦ୍ୟାଳୟର କୋଠାବାଡ଼ି, ଆସବାବପତ୍ର ଓ ଏହାର ଚାରିପାଖରେ ତାରବାଡ଼ ଏବଂ ପ୍ରତି ମାସରେ ରଖିଥିବା ଶିକ୍ଷକମାନଙ୍କୁ ତିନିଶହ ଟଙ୍କା ଭତ୍ତା ଦେବାରେ ଯାହାଙ୍କର ଅବଦାନ ଅବିସ୍ମରଣୀୟ, ସେ ହେଉଛନ୍ତି ଶ୍ରୀଯୁକ୍ତ ବରାଳ । ବର୍ତ୍ତମାନ ଜୟୀରାଜଗୁରୁ ଉ.ପ୍ରା. ବିଦ୍ୟାଳୟଟି ଅନୁଦାନପ୍ରାପ୍ତ ବିଦ୍ୟାଳୟ ଓ ଉଚ୍ଚ ବିଦ୍ୟାଳୟଟି ସରକାରୀ ସ୍ୱିକୃତିପ୍ରାପ୍ତ ବ୍ଲକ୍‌ଗ୍ରାଣ୍ଟ ଉଚ୍ଚ ବିଦ୍ୟାଳୟ । ମରିବାର କିଛିଦିନ ପୂର୍ବରୁ ଏହି ବିଦ୍ୟାଳୟରେ ହେବାକୁ ଥିବା ଏକ ବୈଠକରେ ଯୋଗଦେବାକୁ ପରିଚାଳନା ସମିତିକୁ ସମ୍ମତି ପ୍ରଦାନ କରିଥିବା ଶ୍ରୀ ବରାଳ ଆଜି ସ୍ୱର୍ଗପୁରରେ । ପ୍ରକୃତରେ ସ୍ୱର୍ଗତ ବିଜୁପଟ୍ଟନାୟକଙ୍କ ପରେ ଶ୍ରୀଯୁକ୍ତ ବରାଳ ବିଭିନ୍ନ ଦେଶରେ ଜଣେ ଓଡ଼ିଆ ଭାବେ ଭାରତର ପ୍ରତିନିଧିତ୍ୱ କରିବାରେ ଅଦ୍ୱିତୀୟ ଓଡ଼ିଆ, ଏକାଧାରରେ ସେ ଏକ ମହାନ୍ ଅନୁଷ୍ଠାନ ।

***

ସହ ସଂପାଦକ, ଓଲସ୍ୱା ।

# ସ୍ୱର୍ଗଯାତ୍ରାରେ ସେନାପତି

• ଶ୍ରୀ ବ୍ରଜକିଶୋର ସାହୁ

୧୯୭୩ ମସିହା ଠାରୁ ଚାକିରି ଆରମ୍ଭରୁ ଅବନୀ ସାର୍‌ଙ୍କୁ ଜାଣିଛି । ଆନନ୍ଦପୁର ଓ ଅବିଭକ୍ତ କେନ୍ଦୁଝରର ଶିକ୍ଷାଜିଲ୍ଲାର ଶିକ୍ଷକ ପ୍ରତିନିଧି ଭାବରେ ତାଙ୍କ ସହିତ ବହୁସମୟ ମିଶିବାର ସୁଯୋଗ ପାଇଛି । କିନ୍ତୁ ସେତେବେଳେ ତାଙ୍କ ବିଷୟରେ କିଛି ଜାଣିବାର ସୁଯୋଗ ନ ଥିଲା । କେବଳ ଜଣେ ଉଚ୍ଚକୋଟୀର ବକ୍ତା ଓ ଶିକ୍ଷକ ସଂଘର ଜଣେ କର୍ମକର୍ତ୍ତା ଭାବେ ସେ ପରିଚିତ । ପରବର୍ତ୍ତୀ ସମୟରେ ଶିକ୍ଷକ ମହାସଂଘର ସାଧାରଣ ସଂପାଦକ ହେବାପରେ ସେ ସର୍ବବିଦିତ ହେଲେ । ୧୯୯୧ରେ ପୁରୀ ସମ୍ମିଳନୀରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ଉପସଭାପତି ହେବାପରେ ସାର୍‌ଙ୍କର ନିକଟତର ହେଲି । ଶିକ୍ଷକ ମହାସଂଘର କାର୍ଯ୍ୟକାରୀ କମିଟିର ସଭ୍ୟ ଭାବରେ ଆରମ୍ଭ ହେଲା ଆତ୍ମୀୟତା । ସତରେ ତାଙ୍କର ବ୍ୟବହାର, ସ୍ନେହ ଶ୍ରଦ୍ଧା କଥା ଭାବିବା ବେଳକୁ ଅନ୍ତରରେ କୋହ ଆସୁଛି, କଲମ ଚାଲୁନାହିଁ । ବହୁ ଅଭିଜ୍ଞତା ଓ ପରାମର୍ଶ ପାଇଛି । କିନ୍ତୁ କେତେକ ଘଟଣା ଏବେ ମଧ୍ୟ ମନେପଡୁଛି। ଥରେ ତାଙ୍କ ସହିତ ବାଲେଶ୍ୱର ଓ ବାରିପଦା ଯିବାର ସୁଯୋଗ ମିଳିଲା । ବାଲେଶ୍ୱରରେ ଦିନବେଳା ସଭା ହେଲା । ରାତିରେ ହୋଟେଲ୍ ଚନ୍ଦ୍ରଚୂଡ଼ରେ ରହିବାର ବ୍ୟବସ୍ଥା। ରାତିରେ ଖାଇବା ଟେବୁଲ୍‌ରେ ବସିବା ବେଳେ ମୋତେ ଅଡୁଆ ଲାଗୁଥାଏ; କିନ୍ତୁ ଖାଇବା ବେଳେ ମୋର ସବୁ ସଂଶୟ ଦୂର ହେଲା । ସେ ଏତେବଡ଼ ନେତା, କଲେଜର ପ୍ରିନ୍‌ସିପାଲ; କିନ୍ତୁ ତାଙ୍କ ମନରେ ଗର୍ବ, ଅହଙ୍କାର କିଛି ନାହିଁ । ତାଙ୍କ ପାଖରେ ପ୍ରଥମେ ରୁଟି ଓ ଚିକେନ୍ ଦିଆଗଲା । ମୋ ପାଖରେ କେବଳ ରୁଟି କାରଣ ମୁଁ ନିରାମିଷାସୀ ତେଣୁ ତରକାରୀ ଆସିନାହିଁ । ସେ ମୋ ପାଖକୁ ଗୋଟେ ଡିସ୍ ଦେବାକୁ ହାତ ବଢ଼େଇ କହିଲେ -ନିଅ ଖାଉଥାଅ । ମୁଁ କହିଲି -ସାର୍ ମୁଁ ଆମିଷ ଖାଏନାହିଁ । ସେ କହିଲେ -କ'ଣ ଦୀକ୍ଷା ନେଇଛ ନା ଦୀର୍ଘଜୀବୀ ହେବାକୁ ଆମିଷ ଖାଉନାହଁ । କହନ୍ତି ନିରାମିଷାସୀମାନେ ଦୀର୍ଘଜୀବୀ । ସେଥିପାଇଁ ଆପଣ ଖାଉନାହାଁନ୍ତି । ଆପଣ ଶବ୍ଦଟି ମୋତେ ଅଡୁଆ ଲାଗୁଥାଏ । ମୁଁ କହିଲି -ସାର୍,

ସେମିତି ନୁହଁ, ମୁଁ ଖାଏ ନାହିଁ । କହିଲେ -ଆମର ତ ସମୟ ସରିଆସୁଛି ଯାହାପାଉଛୁ ଖାଉଛୁ । ଆଜି ସେହି କଥା ଭାବିବା ବେଳକୁ ଅନ୍ତର ମଧ୍ୟରେ କୋହ ଜାତ ହେଉଛି । ସତରେ ସେ ଆମ୍ଭମାନଙ୍କୁ ଛାଡ଼ି ଯାଇଛନ୍ତି ବିଶ୍ୱାସ ହେଉନାହିଁ ।

ଆଉ ଏକ ଘଟଣା କଳିଙ୍ଗ ଷ୍ଟାଡିୟମ୍‌ରେ ଆମ ସଂଘର ସମ୍ମିଳନୀ ହେଉଥାଏ । ସମସ୍ତ ଅତିଥି ଆସି ସାରିଥା'ନ୍ତି; କିନ୍ତୁ ଅବନୀ ସାର ଆସିନଥା'ନ୍ତି ଓ ଆସିବେ ନାହିଁ ବୋଲି କହିଥା'ନ୍ତି । କାରଣ ଆମ ସଂଘର ନିର୍ବାଚନ ହେବ ବୋଲି ସେ ଜାଣିଥା'ନ୍ତି ଯାହାକୁ ସେ ଚାହୁଁ ନ ଥିଲେ । ସମସ୍ତେ ବ୍ୟସ୍ତ କିଏ ଯିବ ଡାକିବାକୁ । ଶେଷରେ ସାରଦାବାବୁ ମୋତେ ଓ ସନାତନ ଜେନାଙ୍କୁ ପଠାଇଲେ । ଆମେ ଗଲୁ, ସେ ମୋଟେ ରାଜି ହେଲେନାହିଁ । ବ୍ରହ୍ମଚାରୀଙ୍କ ପରେ ଆମେ ତାଙ୍କୁ ମୁରବୀ ବୋଲି ଭାବି କାର୍ଯ୍ୟ କରୁଛୁ । ସେ ଅନୁପସ୍ଥିତ ରହିଲେ ସମ୍ମିଳନୀ ହେବ କିପରି । ମୁଁ ଏକଥା ଅନୁରୋଧ କରି କହିଲି । ସେ କ'ଣ ଭାବି କହିଲେ -ତୁମ ଦୁଇଜଣଙ୍କୁ ପଠାଇଲେ, ଅନ୍ୟ କେହିଥିଲେ କହିଥା'ନ୍ତି ଚାଲ ଯାଉଛି । ଆମେ ସାଙ୍ଗରେ ଆଣିଲୁ ଓ ସଭା ହେଲା, ତାଙ୍କରି କଥା ରହିଲା । ଏଥିରୁ ଜଣାଗଲା ସେ ଚାହାଁନ୍ତି ନାହିଁ କାହାରି ମଧ୍ୟରେ ମନାନ୍ତର ଓ ମତାନ୍ତର ରହୁ । ସଂଗଠନ ରହୁ, ସମସ୍ତଙ୍କୁ ଗୋଟିଏ ମଞ୍ଚରେ ଏକତ୍ର କରିବାର ଅଭିଳାସ ତାଙ୍କର ଥିଲା । ଆଜି ସବୁ ସରିଗଲା । ତାଙ୍କର ସ୍ନେହ, ଶ୍ରଦ୍ଧା, ପରାମର୍ଶ ଆଦିରୁ ଶିକ୍ଷକ ସମାଜ ବଞ୍ଚିତ । ଓଡ଼ିଶାର ଶିକ୍ଷା ବ୍ୟବସ୍ଥା, ଶିକ୍ଷକ ଶିକ୍ଷିକାଙ୍କ ଅଭାବ ଅସୁବିଧା ପାଇଁ ଆନ୍ଦୋଳନର ସେନାପତି ଆଜି ସ୍ୱର୍ଗପଥରେ ଅସହାୟ ଆମେ । କିନ୍ତୁ ବିଧିର ବିଧାନକୁ ଲଙ୍ଘନ କରିବାର ଶକ୍ତି କାହାର ନାହିଁ । ଆମକୁ ପୁଣି ସାହସ ସଞ୍ଚାର କରିବାକୁ ହେବ । ସେ ଯେଉଁ ନେତୃତ୍ୱ ସୃଷ୍ଟି କରିଯାଇଛନ୍ତି, ତାଙ୍କରି ପଦାଙ୍କ ଅନୁସରଣ କରି ଚାଲିବାକୁ ହେବ । ତାଙ୍କର ଅମର ଆତ୍ମା ସ୍ୱର୍ଗରେ ଥାଇ ଆମକୁ ପ୍ରେରଣା ଦେବ । ଜଗତରନାଥ ଜଗନ୍ନାଥ ଓ ଆରାଧ୍ୟ ଦେବୀ ମା' ତାରିଣୀଙ୍କୁ ପ୍ରାର୍ଥନା କରୁଛି ତାଙ୍କ ଆତ୍ମାର ସଦ୍‌ଗତି ହେଉ ।

'ଅବନୀ ବରାଳ ଅମର ରହେ'

ଶିକ୍ଷକ ମହାସଂଘ ଜିନ୍ଦାବାଦ୍ ।

***

ପୂର୍ବତନ କାର୍ଯ୍ୟକାରୀ ସଭାପତି, ଓଲ୍‌ଷ୍ଟା

# ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

* ଶ୍ରୀ ଅକ୍ଷୟ କୁମାର ମହାନ୍ତି

ସୃଷ୍ଟିର ମହାସତ୍ୟ ମୃତ୍ୟୁର ନିଷ୍ଠୁର ଇଂଗିତରେ ସାମାଜିକ ପରିବର୍ତ୍ତନରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିବା ଶିକ୍ଷକ ମହାସଂଘର ସାଧାରଣ ସଂପାଦକ ତଥା ଅଗଣନ ଶିକ୍ଷକଙ୍କ ଆଶା, ଭରସାର ଆଲୋକଦୀପ୍ତ ଅରୁଣସ୍ତମ୍ଭ ଏବଂ ମୋର ପୂଜ୍ୟ ଗୁରୁଦେବ ପ୍ରଫେସର ଅବନୀ କୁମାର ବରାଳଙ୍କ ଜୀବନର ଦୀପଶିଖା ମହାକାଳର ସୀମାହୀନ ଆକାଶରେ ସବୁଦିନ ପାଇଁ ହଜି ଯାଇଛି ସତ; କିଂତୁ ପଛରେ ରହିଯାଇଛି ତାଙ୍କ ଜୀବନ ଦର୍ଶନର ଚିରନ୍ତନ ପଦଚିହ୍ନ ଯାହା ହଜିବାର ନୁହେଁ ବା ଲିଭିବାର ନୁହେଁ । ସେ ଏକ ଛାୟାପଥ ।

ବର୍ତ୍ତମାନ ପରିସ୍ଥିତିରେ ତାଙ୍କ ପ୍ରତିଷ୍ଠିତ ଆଦର୍ଶ ଆମର ଧ୍ୟେୟ ହେଉ । ଶ୍ରେୟହେଉ ଆମ ପାଇଁ ତାଙ୍କ ଚଲାପଥ, ଆଉ ଅନୁକରଣୀୟ ହେଉ ତାଙ୍କ ପ୍ରଦର୍ଶିତ ମାର୍ଗ ।

ତାଙ୍କ ବିୟୋଗରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟିହେଲା,
ସେହି ଶୂନ୍ୟକୋଳକୁ ପୂର୍ଣ୍ଣ କରିବାପାଇଁ ଉତ୍କଳ ଜନନୀକୁ ଆଉ କେତେ ସମୟ ଅପେକ୍ଷା କରିବାକୁ ହେବ, ତାହାହିଁ ମୋ ସମ୍ମୁଖରେ ଏକ ବିରାଟ ପ୍ରଶ୍ନବାଚୀ ।

ପରିଶେଷରେ ଯେଉଁ ଶିକ୍ଷକ ମହାସଂଘ ତାଙ୍କ ହୃଦୟର ସ୍ପନ୍ଦନ, ସ୍ୱପ୍ନର ସ୍ୱପ୍ନ, ସ୍ଥିତିର ନିର୍ଯ୍ୟାସ, ସେହି ସଂଗଠନକୁ 'ଆମେ ଏକ ଏବଂ ଅଭିନ୍ନ'ର ମହାମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ଆଗାମୀ ଦିନରେ ଏକ ନୂଆ ଦିଗନ୍ତ ଆଡ଼କୁ ଟାଣି ନେବାର ସଂକଳ୍ପ ଗ୍ରହଣ କରିପାରିଲେ, ତାହାହିଁ ହେବ ସେଇ ସଂସ୍କୃତିପୁରୁଷଙ୍କ ଉଦ୍ଦେଶ୍ୟରେ ସର୍ବଶ୍ରେଷ୍ଠ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ।

ତାଙ୍କ ଆତ୍ମା ମୁକ୍ତି ଲାଭ କରୁ, ଏତିକି ପ୍ରାର୍ଥନା ।

* * *

* ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ, ଜଟଣୀ
ସଂପର୍କ :- ୮୭୬୩୬୬୮୮୯୩

# ଯୋଗଜନ୍ମା କାଳଜୟୀ କ୍ରାନ୍ତିକାରୀ ଶିକ୍ଷକ ନେତା

✸ ଶ୍ରୀ କାର୍ତ୍ତିକ ଚନ୍ଦ୍ର ସ୍ୱାଇଁ

ବିଶ୍ୱ ଶିକ୍ଷକ ସଂଗଠନର ସର୍ବମାନ୍ୟ ନେତା, ରାଜ୍ୟ ଶିକ୍ଷକ ମହାସଂଘର ପ୍ରାଣପ୍ରତିଷ୍ଠାତା, ପ୍ରବୀଣ ଶିକ୍ଷାବିତ୍ ଓ ସାହିତ୍ୟିକ, ବିଶିଷ୍ଟ ସ୍ତମ୍ଭକାର ଓ ନାଟ୍ୟକାର ତଥା କଥାକାର, ସୁଦକ୍ଷ ସଂଗଠକ ଓ ସମାଲୋଚକ, ସାମ୍ୟବାଦୀ ଆନ୍ଦୋଳନର ଅନ୍ୟତମ ଅଗ୍ରଣୀ ଟାଣୁଆ ନେତା, "ଶିକ୍ଷା ସମସ୍ୟା" ପତ୍ରିକାର ସଫଳ ସଂପାଦକ, ଆଦର୍ଶ ପ୍ରାଧ୍ୟାପକ ଓ ଅଧ୍ୟକ୍ଷ, ପବିତ୍ର ଓଡ଼ିଶା ମାଟିର ସୁପୁତ୍ର ପ୍ରଫେସର ଅବନୀ କୁମାର ବରାଳଙ୍କର ଗତ ତା୦୭।୧୧।୧୩ରେ ତିରୋଧାନ ହେତୁ ରାଜ୍ୟ ପାଇଁ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟି ହୋଇଛି । ତାଙ୍କ ବିୟୋଗରେ ଓଡ଼ିଶା ଏକ ନିର୍ଭୀକ ନେତାଙ୍କୁ ହରାଇଲା । ଶିକ୍ଷା-ଶିକ୍ଷକ-ଶିକ୍ଷାର୍ଥୀ ଓ ଶିକ୍ଷାନୁଷ୍ଠାନ ସମସ୍ୟା ଦୂର କରିବାରେ ସେ ସତ ପ୍ରଚେଷ୍ଟା ଜାରି ରଖିଥିଲେ । ତାଙ୍କ ଯୋଗୁ ଶିକ୍ଷାକ୍ଷେତ୍ରରେ ବହୁ ସଂସ୍କାର ହୋଇଥିଲା । ସେ ବାସ୍ତବବାଦୀ ଶିକ୍ଷା ସଂସ୍କାରକ ଥିଲେ । ସାଲିସ୍‌ବିହୀନ ସ୍ୱାଭିମାନୀ ସଂଗ୍ରାମୀ ଶିକ୍ଷକନେତା ଭାବରେ ତାଙ୍କର ସୁନାମ ଥିଲା । ଶିକ୍ଷା ଜଗତରେ ତାଙ୍କର ଶାଣିତ ସ୍ୱର ସମସ୍ତଙ୍କୁ ସଚେତନ କରୁଥିଲା । ଧ୍ୱଂସ ଆସନ୍ନ ଅନ୍ଧକାର ବିରୋଧରେ ଆଲୋକ ଓ ଅଙ୍ଗୀକାରର ଅଭିଯାତ୍ରୀ ରୂପେ ସେ ଅବିରତ ସଂଗ୍ରାମ କରୁଥିଲେ । ଉଚ୍ଚକୋଟୀର ଆଦର୍ଶ ପ୍ରାଧ୍ୟାପକ ଭାବରେ ତଥା ବିଶିଷ୍ଟ ବାଗ୍ମୀ ରୂପେ ତାଙ୍କର ସୁନାମ ଥିଲା ।

ସର୍ବଭାରତୀୟ ଶିକ୍ଷକନେତା ରୂପେ ସୁପରିଚିତ ବିପ୍ଲବୀ ଅବନୀ କୁମାର ବରାଳ ମହାଶୟ ଶିକ୍ଷକ ଆନ୍ଦୋଳନର ମହାରଥୀ ଥିଲେ । ଦୃଢ଼ନେତୃତ୍ୱ ପ୍ରଦାନ କରୁଥିଲେ । ନୀତିନିଷ୍ଠ ନିଷ୍କଳଙ୍କ ବ୍ୟକ୍ତିତ୍ୱ ତଥା ପ୍ରଗତିଶୀଳ ଶିକ୍ଷକନେତା ପୂଜ୍ୟ ଅବନୀ ବରାଳ ମହୋଦୟ ଓଡ଼ିଶା ଶିକ୍ଷା ଆନ୍ଦୋଳନର କର୍ଣ୍ଣଧାର ଭାବରେ ପରିଚିତ ରାଜ୍ୟ ଶିକ୍ଷିକା, ଶିକ୍ଷକ ଓ ଅଧ୍ୟାପିକା, ଅଧ୍ୟାପକମାନଙ୍କୁ ଏକାଠି କରି ମହାସଂଘ

ଗଠନ ପୂର୍ବକ ଅନେକ ଦାବି ହାସଲ କରିପାରିଥିଲେ । ଅବହେଳିତ ଶିକ୍ଷକ ଜାତି ପାଇଁ ସେ ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ସଂଗ୍ରାମ ଜାରି ରଖିଥିଲେ । ଶିକ୍ଷା-ଶିକ୍ଷକ ଆନ୍ଦୋଳନର ସେ ସ୍ରଷ୍ଟା ଥିଲେ । ସୁଲେଖକ ଓ ସୁବକ୍ତା ଭାବରେ ସବୁସ୍ତରରେ ନିଜର ପ୍ରତିଷ୍ଠା ଅର୍ଜନ କରି ଖୁବ୍ ଲୋକପ୍ରିୟ ହୋଇଥିଲେ । ଉପନ୍ୟାସ "ପ୍ରେମ ଅନ୍ୱେଷଣରେ ଗୋଟିଏ ତରୁଣୀ"ରୁ ଭ୍ରମଣ କାହାଣୀ "ହିରୋସୀମା ନାଗାସାକି ଆଉ ନୁହେଁ ଆଉ ନୁହେଁ" ଆଦି ବହୁ ମୂଲ୍ୟବାନ ପୁସ୍ତକ ରଚନା କରିଥିଲେ । ସେ ବ୍ୟକ୍ତି ଏକ କିନ୍ତୁ ତାଙ୍କର ପ୍ରତିଭା ଅନେକ ଥିଲା । ବହୁ ଅନୁଷ୍ଠାନ ସହ ସାମିଲ ହୋଇ କର୍ମକର୍ତ୍ତା ରୂପେ ବିଭିନ୍ନ ବୈପ୍ଳବିକ ଆନ୍ଦୋଳନର ଦୃଢ଼ ନେତୃତ୍ୱ ନେଉଥିଲେ । ଏହା ସହିତ ପୂଜ୍ୟ ବରାଳଙ୍କର ବିଭିନ୍ନ କ୍ଷେତ୍ରରେ ଅସାଧାରଣ ପାଣ୍ଡିତ୍ୟ ରହିଥିଲା । ସେ ନେତା ଓ ଅଭିନେତା ଭାବରେ ନିଜର କୀର୍ତ୍ତି ସ୍ଥାପନ କରିଛନ୍ତି । କିଛି ବର୍ଷ ସେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅଭିନୟ କରି ଅଭିନେତା ଜୀବନର ପରିଚୟ ପ୍ରଦାନ କରିଥିଲେ ।

ସାମ୍ୟବାଦୀ ଆନ୍ଦୋଳନର ପୁରୋଧା ଭାବରେ ଅବହେଳିତ ଦଳିତ ସମାଜର ସେ ଆଶା ଭରସା ଥିଲେ । ଖଟିଖିଆ ମେହନତି ମଣିଷର ସଂଗ୍ରାମୀ ସାଥୀ ହୋଇଥିଲେ । ଏଣୁ ସାମ୍ୟବାଦୀ ଚିନ୍ତାନାୟକ ରୂପେ ସେ ପରିଚିତ । ସମାଜ ସେବାରେ ତାଙ୍କର ଅବଦାନ ଅବିସ୍ମରଣୀୟ । କେନ୍ଦ୍ର-ରାଜ୍ୟ-ଜିଲ୍ଲା-ବ୍ଲକ-ପଞ୍ଚାୟତ ସ୍ତରରେ ଶିକ୍ଷା ପରାମର୍ଶଦାତା ସମିତି ଗଠନ ପାଇଁ ସେ ଦାବି କରୁଥିଲେ । ଶିକ୍ଷକ ମହାସଂଘ ଛତାତଳେ ବ୍ୟାପକ ଆନ୍ଦୋଳନାତ୍ମକ ପଦକ୍ଷେପ ଗ୍ରହଣ କରି ସେ ଶିକ୍ଷକ ସମାଜର ବହୁ ସମସ୍ୟା ସମାଧାନର ରାସ୍ତା ବାହାର କରିଥିଲେ । ରାଜ୍ୟରେ ଶିକ୍ଷା ସଂସ୍କାର ଓ ଶିକ୍ଷକ କର୍ମଚାରୀଙ୍କ ସ୍ୱାର୍ଥରକ୍ଷା କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ । ବିଶ୍ୱ ଦରବାରରେ ସେ ଶିକ୍ଷା ଓ ଶିକ୍ଷକ ଆନ୍ଦୋଳନ ସଂକ୍ରାନ୍ତ ବହୁ ସମ୍ମିଳନୀକୁ ଭାରତର ପ୍ରତିନିଧିତ୍ୱ କରିଥିଲେ ବିଭିନ୍ନ ଗଣମାଧ୍ୟମରେ ସ୍ତମ୍ଭକାର ଭାବେ ଏବଂ ବହୁମୂଲ୍ୟବାନ ପୁସ୍ତକ ରଚନା ପାଇଁ ସମ୍ମାନନୀୟ ବରାଳଙ୍କର ସାହିତ୍ୟ ଜଗତରେ ବିଶେଷ ଖ୍ୟାତି ଥିଲା । ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ସେ ସମ୍ବର୍ଦ୍ଧିତ ହୋଇଥିଲେ । ଏହାଛଡା ଅନେକ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ରାଶି ରାଶି ସମ୍ମାନ ଓ ସମ୍ବର୍ଦ୍ଧନା ପ୍ରଦାନ କରାଯାଇଥିଲା । ରାଜନେତା ଓ ଶିକ୍ଷା

ପ୍ରଶାସକବୃନ୍ଦ ଯେତେବେଳେ ନିଜ ଦୋଷ ଖସାଇ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ମୁଣ୍ଡକୁ ଠେଲି ଦେଉଥିଲେ, ସେତେବେଳେ ମହାନ ଶିକ୍ଷାବିତ୍ ବରାଳ ମହାଶୟ ଏହାର ଦୃଢ ପ୍ରତିବାଦ କରୁଥିଲେ । ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ମୁଖପତ୍ର "ଶିକ୍ଷା ସମ୍ପର୍କ"ର ବ୍ୟକ୍ତିଗତ ଭାବରେ ମୁଁ ଆଜୀବନ ଗ୍ରାହକ-ସଦସ୍ୟ ହେବାପାଇଁ ସେ ଦେଇଥିବା ପରାମର୍ଶକୁ ଆନନ୍ଦରେ ଗ୍ରହଣକରି କାର୍ଯ୍ୟକାରୀ କରିଥିଲି । ଏହି ପତ୍ରିକାର ପ୍ରତ୍ୟେକ ସଂଖ୍ୟା ନିୟମିତ ଭାବେ ମୁଁ ପାଉଛି । ୧୯୮୨ମସିହା ମଇ ମାସ ପୂଜ୍ୟ ଅବନୀ ବରାଳ ମହୋଦୟ ମୋ ଶିକ୍ଷକ ଜୀବନରେ ସମସ୍ୟା ସମାଧାନ ପାଇଁ ତତ୍କାଳୀନ ରାଜ୍ୟ ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶକଙ୍କ ସହ ଯୁକ୍ତି ଉପସ୍ଥାପନା ପୂର୍ବକ ସ୍କୁଲ ପରିଚାଳନା କମିଟିର ଅନ୍ୟାୟ କାର୍ଯ୍ୟକୁ ପ୍ରତିବାଦ କରି ସରକାରୀ ପତ୍ର ଲେଖାଇବାରେ ସଫଳ ହୋଇଥିଲେ । ଯାହା ଫଳରେ ସହଜରେ ସମସ୍ୟାର ସମାଧାନ ହୋଇଥିଲା । ସେ ଶିକ୍ଷକପ୍ରାଣ ଥିଲେ ଏବଂ ସମସ୍ୟା ସମାଧାନର ତରିକା ଜାଣିଥିଲେ । ତାଙ୍କର ଆଦର୍ଶ ମୋର ସଫଳ ଶିକ୍ଷକ ଜୀବନରେ ପ୍ରେରଣାର ଉତ୍ସ ଥିଲା । ଆଜି ମୁଁ ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣକରି ପୂଜ୍ୟ ଅବନୀ କୁମାର ବରାଳ ମହୋଦୟଙ୍କ ଅମ୍ଳାନ ଅମର ଆତ୍ମାର ଶାନ୍ତିପୂର୍ଣ୍ଣ ସଦ୍‌ଗତି ସକାଶେ ପ୍ରଭୁ ଶ୍ରୀ ଜଗତ୍‌ପିତା ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ପୂର୍ବକ ଭକ୍ତିପୂତ ପ୍ରଣାମ କରୁଛି । ସେହି ଯୋଗଜନ୍ମା କାଳଜୟୀ କ୍ରାନ୍ତିକାରୀ ଶିକ୍ଷକନେତା ଅବନୀ କୁମାର ବରାଳଙ୍କ ଅଭୁଲା ଅଲିଭା ସ୍ମୃତି ଶିକ୍ଷକ ସମାଜକୁ ଅନୁପ୍ରାଣିତ କରୁ - ଏହାହିଁ କାମନା ।

***

* ରାଜ୍ୟ ସମ୍ମାନିତ ଶିକ୍ଷକ,
ଭଣ୍ଡାରିପୋଖରୀ, ଭଦ୍ରକ
ମୋ: ୯୮୫୩୫୮୯୯୮୯

# ବହୁମୁଖୀ ପ୍ରତିଭା

✱ ଶ୍ରୀ ତ୍ରିଲୋଚନ ମହାପାତ୍ର

୧୯୭୨ ମସିହାରେ ଜଟଣୀ ବ୍ଲକ୍ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଗଠନ ପରେ ପୂଜ୍ୟ ବନମାଳୀ ବ୍ରହ୍ମଚାରୀ ଓ ଅଧ୍ୟାପକ ଅବନୀ ବରାଳଙ୍କ ସହିତ ମୋର ସାଂଗଠନିକ ସଂପର୍କ ଗଢ଼ି ଉଠିଲା । ସେଇ ବର୍ଷ ସରକାରୀ ଶିକ୍ଷକ ଓ ଅଧ୍ୟାପକଙ୍କ ବେତନ ସହିତ ବେସରକାରୀ ଶିକ୍ଷକ ଓ ଅଧ୍ୟାପକଙ୍କ ବେତନ ସମାନ କରିବାକୁ ଶିକ୍ଷକ ମହାସଂଘ ଆନ୍ଦୋଳନ କରୁଥାଏ । ସାଂଗଠନିକ ସଭା, ଧାରଣା, ଧର୍ମଘଟରେ ଯୋଗଦେଇ ଉଭୟଙ୍କ ନେତୃତ୍ୱ ଓ ବ୍ୟକ୍ତିତ୍ୱ ସଂପର୍କରେ ଅଧିକ ଜାଣିଲି । ପୂଜ୍ୟ ବ୍ରହ୍ମଚାରୀଙ୍କ ଆଦର୍ଶ ବ୍ୟକ୍ତିତ୍ୱ ଓ ନୈତିକତା ଏବଂ ଅବନୀବାବୁଙ୍କ ଦୃଢ଼ ନେତୃତ୍ୱ ଯୋଗୁ ୧୯୭୪ ମସିହାର ଆନ୍ଦୋଳନ ସଫଳ ହୋଇ ଇତିହାସ ସୃଷ୍ଟି କଲା । ଅବନୀବାବୁ ଜଣେ ଦକ୍ଷ ସଂଗଠକ ଭାବରେ ଜାତୀୟ ସ୍ତରରେ ପରିଚିତ ହେଲେ ।

୧୯୭୬ ବା ୭୭ ମସିହା କଥା । ଜଟଣୀ ସାଂସ୍କୃତିକ ପରିଷଦ ଆନୁକୂଲ୍ୟରେ ଗହ୍ମାପୂର୍ଣ୍ଣମୀ ଦିନ ଗଂଗାଧର ମେହେର ଜୟନ୍ତୀ ପାଳନ କରୁଥାଉ । ନାଟ୍ୟକାର ପ୍ରାଣବନ୍ଧୁ କର, ଗବେଷକ ପଣ୍ଡିତ ସଦାଶିବ ରଥଶର୍ମା, କବି ତଥା ପ୍ରଶାସକ ସୁଧାଂଶୁ ମୋହନ ରାଉତରାୟ ଅତିଥିଭାବେ ଯୋଗଦେଇଥା'ନ୍ତି । ଅବନୀବାବୁ ଥାନ୍ତି ମୁଖ୍ୟବକ୍ତା । ସେ କବିବର ରାଧାନାଥ ଓ ସ୍ୱଭାବ କବି ଗଂଗାଧରଙ୍କ କାବ୍ୟକୃତିର ତୁଳନାତ୍ମକ ସମୀକ୍ଷା କରି ଭାଷଣ ଦେଲେ । ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥା'ନ୍ତି । ଆଗରୁ ତାଙ୍କର ଜ୍ୱଳାମୟୀ ଭାଷଣ ଶୁଣିଥିଲି; ମାତ୍ର ସେଦିନର ପାଣ୍ଡିତ୍ୟପୂର୍ଣ୍ଣ ସାହିତ୍ୟିକ ଭାଷଣ ଶୁଣି ଆଶ୍ଚର୍ଯ୍ୟ ହୋଇଗଲି ।

ସେ ଥିଲେ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରର ଶିକ୍ଷାବିତ୍, ଶିକ୍ଷକ ନେତା ତଥା ସଂଗଠକ, ଛାତ୍ରବତ୍ସଳ, ବିଜ୍ଞ ଅଧ୍ୟାପକ, ସୁଦକ୍ଷ ଅଧକ୍ଷ, ଅନେକ ଶିକ୍ଷାନୁଷ୍ଠାନର ସ୍ରଷ୍ଟା, ସାହିତ୍ୟିକ, ନାଟ୍ୟପ୍ରେମୀ, ବନ୍ୟା-ଦୁର୍ଭିକ୍ଷ ପ୍ରପୀଡ଼ିତ ତଥା ଅସହାୟ ଜନଗଣଙ୍କ ସେବକ, ସର୍ବୋପରି ସମାଜ-ବିକାଶ ପାଇଁ ଜୀବନ ସମର୍ପିବାର ସଂକଳ୍ପ ନେଇଥିବା ମଧୁବାବୁ, ଗୋପବନ୍ଧୁ, ନବକୃଷ୍ଣ ଚୌଧୁରୀଙ୍କ ଭଳି ଜଣେ ତ୍ୟାଗୀ, ଦରଦୀ ଓ ସ୍ନେହୀ ମଣିଷ । ଶିକ୍ଷକମାନଙ୍କ ଜୀବନ-ଜୀବିକାର ଅନୁକୂଳ ଭିତ୍ତି ସ୍ଥାପନ କରିଥିବା ଦିବଂଗତ ପ୍ରତିଭାକୁ କୋଟି ପ୍ରଣାମ । ☐☐

✱ ପୂର୍ବତନ ସମ୍ପାଦକ, ନି.ମା. ଶିକ୍ଷକ ସଂଘ, ଭୁବନେଶ୍ୱର ଶିକ୍ଷାଜିଲ୍ଲା

# ସାଧାରଣ ମଣିଷ ଅସାଧାରଣ ବ୍ୟକ୍ତିତ୍ୱ

✱ ଶ୍ରୀ ନିକୁଞ୍ଜ ମହାନ୍ତି

It is never possible to change the decision of God. A brutal truth, but life has to move on.

ସମୟର ଚକ୍ରରେ ସ୍ରଷ୍ଟା ବିଦାୟ ନିଏ; କିନ୍ତୁ ତା'ର ସୃଷ୍ଟି ରହିଯାଏ, ଆମେ ଜୀବନରେ ଅନେକଙ୍କ ସଂପର୍କରେ ଆସିଥାଉ, କିନ୍ତୁ ଚିହ୍ନା ମୁହଁ ପରି ସମସ୍ତଙ୍କୁ ଲାଗିଲେ ମଧ ସମସ୍ତଙ୍କୁ ମନେ ରଖିହୁଏ ନାହିଁ । କିନ୍ତୁ ଆଉ କେତେଜଣ ଆମ ମନ, ହୃଦୟ ତଥା ଆତ୍ମାରେ ଏକ ପ୍ରକାର ଜବରଦସ୍ତ ଆସନ ଜମାଇ ବସିଥାଆନ୍ତି ଚାହିଁଲେ ମଧ ପାଶୋରି ହୁଏ ନାହିଁ । ବରଂ ତାଙ୍କର ଅଭୁଲା ସ୍ମୃତି ଜୀବନର ପାଥେୟ ହୋଇଯାଏ । ଯେଉଁମାନେ ଅନ୍ୟର ଦୁଃଖରେ କାନ୍ଦି ପାରନ୍ତି, ବିପଦରେ ବନ୍ଧୁତାର ହାତ ବଢ଼ାଇ ପାରନ୍ତି; କିମ୍ବା ଅନ୍ୟକୁ ରକ୍ଷା କରିବା ପାଇଁ ନିଜ ପ୍ରାଣକୁ ତୁଚ୍ଛ ମନେ କରି ହସି ହସି ଆତ୍ମୋତ୍ସର୍ଗ କରନ୍ତି ସେଇ ବିରଳ ବ୍ୟକ୍ତିତ୍ୱ ମଧ୍ୟରୁ ବିବଂଗତ ବରାଳ ଅନନ୍ୟ ।

୭ ନଭେମ୍ବର, ୨୦୧୩ ତାରିଖର ଦୁଃସମ୍ବାଦ ଆଜି ମଧ ବିଶ୍ୱାସ କରିହେଉନାହିଁ । ମହାସଂଘର କର୍ମଚାରୀ ବଂଧୁ ଅଜୟ ସାହୁ ଦିନ ୧୨ଟା ବେଳେ ଖବର ଦେଲେ 'ସାର୍' ଚାଲିଗଲେ । ଲେଖିଲା ବେଳକୁ ଆଜି ମଧ ଏହି ନିରାଟ ସତ୍ୟକୁ ଗ୍ରହଣ କରିହେଉନାହିଁ । "ସାର୍" ଚାଲିଗଲେ "ଯାହାହେଉ ଏ ସଂବାଦ ଯେତେ ଦାରୁଣ, ନିଷ୍ଠୁର ହେଲେ ମଧ ନିଜର କୋହ ସମ୍ବରଣ କରି ଯଥାସମ୍ଭବ ନିଜକୁ ସଂଯତ କରି ମୁଁ ଏହି ଦାରୁଣ ବାର୍ତ୍ତା ଅନ୍ୟମାନଙ୍କୁ ପ୍ରେରଣ କରି ହସ୍ପିଟାଲ ବାହାରିଲି । "ସବୁଶେଷ" । ସେହି ନିଷ୍ପାପ ଶରୀରଟି ଜୀବନ୍ରୁ ଜଡ଼ ପାଲଟିଛି । ୬ ନମ୍ବର କ୍ୟାପିଟାଲ ହସ୍ପିଟାଲ ଲୋକାରଣ୍ୟ । ପଥଚାରୀ, ସାଂବାଦିକ, ରାଜନେତା , ସ୍ତମ୍ଭକାର, ଫଟୋଗ୍ରାଫର ସମସ୍ତେ ନିଶ୍ଚଳ, ଶୋକାକୁଳ ପରିବେଶ, ସମସ୍ତଙ୍କ ଆଖିରେ ଲୋତକର ପ୍ଲାବନ । "ଅବନୀ ବାବୁ ଆଉ ନାହାନ୍ତି", ଏକ ଦରଦୀ ମଣିଷ ଆମ ଠାରୁ ଚାଲିଗଲେ । ଏହି କଠୋର ଦୁଃସଂବାଦକୁ "ପବନ" ବାର୍ତ୍ତାବହର ଦାୟିତ୍ୱ ବହନ କରି ଆଖିପିଛୁଳାକେ ସହରରୁ ପୁରପଲ୍ଲୀ ପର୍ଯ୍ୟନ୍ତ ପହଞ୍ଚାଇବାରେ କୁଣ୍ଠା କରିନାହିଁ, ସେହି ପବନରୂପି ବାର୍ତ୍ତାବହକୁ ମୋର କୋଟି ପ୍ରଣାମ ।

ଭୁବନେଶ୍ୱର ୬ ନମ୍ବର କ୍ୟାପିଟାଲ ହସ୍‌ପିଟାଲରୁ ଶବ ଶୋଭାଯାତ୍ରା ଭୁବନେଶ୍ୱର ମୁଖ୍ୟ ରାସ୍ତାମାନ ଦେଇ ଭଗବତୀ ଭବନ, ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ ଦପ୍ତରରେ ପହଂଚିଲା । ଓଡ଼ିଶାର କୋଣ ଅନୁକୋଣରୁ ବସିଲା ଠାରୁ ଉଠି ଆସିଲା ମହାସ୍ରୋତ ଦରଦି ମଣିଷଟିର ଶେଷ ଦର୍ଶନ ନେବାକୁ । ପରେ ପରେ ଶବ ଶୋଭାଯାତ୍ରା, ଭଗବତୀ ଭବନରୁ ଶିକ୍ଷକ ମହାସଂଘ, ୪୩, ଭୌମନଗର ରାଜ୍ୟ ଦପ୍ତର ଓ ସର୍ବଶେଷରେ ନିଜର ବାସଗୃହ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲା । ରାଜରାସ୍ତାଠାରୁ ଖୋର୍ଦ୍ଧା ପର୍ଯ୍ୟନ୍ତ ପ୍ରତ୍ୟେକ ଯାଗାରେ ଗୋଟିଏ ଆୱାଜ ଉଠିଲା, 'ଅବନୀ ବରାଳ ଅମର ରହେ', 'ଅବନୀ ବରାଳ ଯୁଗ ଯୁଗ ଜିଓ', 'ଅବନୀ ବରାଳ ଲାଲ୍ ସଲାମ', ଅନୁଭବି ହିଁ ଅନୁଭବ କରିବ ।

" ପ୍ରାଣୀର ଭଲମନ୍ଦ ବାଣୀ
ମରଣ କାଳେ ତାହା ଜାଣି ।"

ଏହି ପଂକ୍ତିକୁ ଶେଷ କଲାବେଳେ ପଲ୍ଲୀକବି ନନ୍ଦ କିଶୋରଙ୍କର ଏଇ କେତେ ପଦ ଲେଖିବା ପାଇଁ କଲମ ଚଞ୍ଚଳ ହୋଇ ଉଠୁଛି ।

"ତ୍ରିତାପେ ତାପିତ ଏ ମନ ପ୍ରାଣ
ନିୟତି ହସ୍ତେ ଆହା କି ହତମାନ
ନର ଶରୀର ଜରା ବ୍ୟାଧିର ଘର
ଯାହା ଜ୍ୱାଳାରେ ସଦା ଜଳେ ଅନ୍ତର ।

x x x x x x

ସିଂହର ଶକ୍ତି ଥାଏ ନର ଦେହରେ
ଅଲକ୍ଷେ ବ୍ୟାଧି ଜରା ହରଣ କରେ !"

ଆଜିର ଦିନରେ ମୋର ଅତୀତର ସମସ୍ତ ସାଂଗଠନିକ ଓ ରାଜନୈତିକ ଅଭିଜ୍ଞତା, ଅନୁଭବ ଓ ଦୀର୍ଘଦିନ ଧରି ମହାସଂଘରେ ପ୍ରାୟ ପ୍ରତ୍ୟହ ସନ୍ଧ୍ୟାରେ ବସିରହି ଆଳାପ ଆଲୋଚନା କରିବାର ଅନୁଭୂତିକୁ ଏହି ଲେଖାରେ ଉଦ୍ଧାର କରିବାକୁ ଇଚ୍ଛା କରୁନାହିଁ । ଅବଶିଷ୍ଟ ଜୀବନ ପାଇଁ ଟିକିଏ ଆଶୀର୍ବାଦର ଆଶା ରଖି ମୋର ଅନ୍ତିମ ଲାଲ୍ ସାଲ୍ୟୁଟ୍ ଦେଇ ରହୁଛି ।

"ଆତ୍ମାର ସଦ୍‌ଗତି ହେଉ ।"

*** ଶିକ୍ଷକ ମହାସଂଘ, ୪୩, ଭୌମନଗର
ଭୁବନେଶ୍ୱର

# ଓଡ଼ିଶାର ଶିକ୍ଷାକାଶର ଧ୍ରୁବତାରା ପ୍ରଫେସର ଅବନୀ ବରାଳ ଅମର ରହେ

✱ ଶ୍ରୀ ଅଲେଖ ଚନ୍ଦ୍ର ନାୟକ

ଗତ ତା ୭.୧୧.୧୩ ଅପରାହ୍ନ ୨ଟା ସମୟରେ ପ୍ରଥମେ ମୋର ବନ୍ଧୁ ବିନୋଦ ବାବୁଙ୍କ ଠାରୁ ଫୋନ୍ ଯୋଗେ ଜାଣିବାକୁ ପାଇଲି ଯେ, ସାଥୀ ଅବନୀ ବରାଳ ଆଉ ନାହାନ୍ତି । ଏକଥା ଶୁଣି ପ୍ରଥମେ ବିଶ୍ୱାସ କରି ନ ଥିଲି । ଅଳ୍ପ ସମୟ ପରେ ଓଲ୍କଷ୍ଟା ପ୍ରାକ୍ତନ ସଭାପତି ଭାଗୀରଥି ନାୟକ ଫୋନ କରି କହିଲେ, "ଅଲେଖ ଭାଇ, ଅବନୀ ବାବୁ ଚାଲିଗଲେ ।" ଏହା ପରେ ଏହି ଦୁଃଖଦ ସମ୍ବାଦଟିକୁ ଭଦ୍ରକ ଅଞ୍ଚଳର ଭାଇ ଓ ଭଉଣୀମାନଙ୍କୁ ଜଣାଇଦେଲି । ସମସ୍ତଙ୍କ ମୁହଁରୁ ଗୋଟିଏ କଥା ବାହାରୁଥିଲା- "ଓଡ଼ିଶାର ଶିକ୍ଷାକାଶରୁ ଧ୍ରୁବତାରା ଚାଲିଗଲେ । ତାଙ୍କର ଆଉ କିଛି ଦିନ ବଞ୍ଚିବାର ଥିଲା । ଏ ଯେଉଁ ଅପୂରଣୀୟ କ୍ଷତି ହେଲା ତାକୁ କେହି ବି ପୂରଣ କରି ପାରିବେନାହିଁ ।" ଏପରି କେତେ କ'ଣ ? ଓଡ଼ିଶାର ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ ଠାରୁ ଆରମ୍ଭ କରି ତତ୍କାଳୀନ ବେସରକାରୀ ସ୍କୁଲ କଲେଜର ଶିକ୍ଷକମାନଙ୍କ ଦୁଃଖକୁ ଲାଘବ କରିବା ପାଇଁ ଶିକ୍ଷକ ସଂଘ ଗଠନ କରି ହଜାର ହଜାର ଶିକ୍ଷକ, ଶିକ୍ଷିକା, ଅଧ୍ୟାପକ, ଅଧ୍ୟାପିକା ଓ ଶିକ୍ଷା କର୍ମଚାରୀମାନଙ୍କ ସମସ୍ୟା ସମାଧାନ କରି ସଭିଙ୍କ ମୁହଁରେ ହସ ଭରିଦେଇଥିବା ଲୋକଟି ହେଉଛନ୍ତି ଆମ ସମସ୍ତଙ୍କର ସଖା, ସହୋଦର, ମାର୍ଗଦର୍ଶକ ଓ ଚିରନମସ୍ୟ ପ୍ରାଣନାଥ ମହାବିଦ୍ୟାଳୟ, ଖୋର୍ଦ୍ଧାର ପ୍ରାକ୍ତନ ଓଡ଼ିଆ ବିଭାଗର ଅଧ୍ୟାପକ ଓ ପରେ ଅଧ୍ୟକ୍ଷ ପ୍ରଫେସର ଅବନୀ କୁମାର ବରାଳ । ସେ ଜଣେ ବ୍ୟକ୍ତି ନ ଥିଲେ ସେ ଥିଲେ ଏକ ଅନୁଷ୍ଠାନ । ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଓଡ଼ିଶାର ସବୁ ଶ୍ରେଣୀର ଶିକ୍ଷକମାନେ ସଂଗଠିତ ହୋଇ ଶିକ୍ଷା କ୍ଷେତ୍ରରେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣିବା ପାଇଁ ସଂଗ୍ରାମ ଜାରି ରଖିଥିଲେ ।

ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଂଘ (ଓଷ୍ଟା) ୧୯୪୩ରୁ, ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ (ଓଲ୍କଷ୍ଟା) ୧୯୫୭ରୁ ଓ ବେସରକାରୀ କଲେଜ ଶିକ୍ଷକ ସଂଘ (ଅଙ୍ଗୋଟା) ୧୯୬୧ରୁ ପ୍ରତିଷ୍ଠିତ ହୋଇ ସ୍ୱତନ୍ତ୍ର ଭାବେ ଆନ୍ଦୋଳନ କରି କୌଣସି ସୁଫଳ ପାଇପାରୁ ନ ଥିଲେ । କୌଣସି ସଂଘ ବୈପ୍ଲବିକ ପନ୍ଥା ଅନୁସରଣ

କରିବା  ପାଇଁ ସାହସ କରି ପାରୁ ନ ଥିଲେ । ଠିକ୍ ଏହି ସମୟରେ ଖୋର୍ଦ୍ଧା ଅଞ୍ଚଳର ଜଣେ କ୍ରାନ୍ତିକାରୀ ସେନାଧକ୍ଷଙ୍କ ଆବିର୍ଭାବ ସମଗ୍ର ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ସେ ଆଉ କେହି ନୁହଁନ୍ତି, ସେ ହେଉଛନ୍ତି ଓଡ଼ିଶାର ଶିକ୍ଷକ ମହାସଂଘର ପ୍ରତିଷ୍ଠାତା ଓ ପ୍ରିୟ ସାଧାରଣ ସଂପାଦକ ପ୍ରଫେସର ଅବନୀ କୁମାର ବରାଳ । ୧୯୬୯ ମସିହା ଜୁଲାଇ ୨୭ ତାରିଖ ଦିନ ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକଠାରେ ପ୍ରାଥମିକ ଠାରୁ କଲେଜ ଶିକ୍ଷକ ସଂଘର କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କୁ ନେଇ 'ଶିକ୍ଷକ ସମନ୍ୱୟ ସମିତି' ନାମରେ ଏକ ସଂଘ ଗଠନ କରାଯାଇ ଶିକ୍ଷାମନ୍ତ୍ରୀଙ୍କୁ ମାତ୍ର ଚାରିଗୋଟି ଦାବି ପୂରଣ ପାଇଁ ଚରମ ପତ୍ର ଦିଆଯାଇଥିଲା ଓ ଦାବି ପୂରଣ ନ ହେଲେ ଆସନ୍ତା ତା ୧୬.୮.୬୯ ଦିନ ଦୁର୍ବାର ଆନ୍ଦୋଳନ ହେବ ବୋଲି ଜଣାଇ ଦିଆଯାଇଥିଲା ; ମାତ୍ର ଶିକ୍ଷମନ୍ତ୍ରୀଙ୍କ ନିଷ୍କ୍ରିୟତା ହେତୁ ପ୍ରଫେସର ଅବନୀ ବରାଳ, ବନମାଳୀ ବ୍ରହ୍ମଚାରୀ, କୈଳାସ ଚନ୍ଦ୍ର ମହାପାତ୍ର, ଅନନ୍ତ କର, ବିବେକାନନ୍ଦ ଦାଶ, ପୀତାବାସ ବେହୁରିଆ ଓ ଦାଶରଥି ନାୟକ ନେତୃତ୍ୱରେ ଏକ ଐତିହାସିକ ଶିକ୍ଷକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଶିକ୍ଷକମାନେ ରାଜରାସ୍ତାକୁ ଓହ୍ଲାଇ ହାତରେ ପ୍ଲାକାର୍ଡ଼ ଧରି 'ଲଢ଼େଇ ଲଢ଼େଇ ଲଢ଼େଇ ଚାହୁଁ' ଲଢ଼େଇ କରି ବଞ୍ଚିବା ଚାହୁଁ, ''ଦାବି ପୂରଣର ଗୋଟିଏ ବାଟ, ଲଢ଼େଇ ଆଉ ଧର୍ମଘଟ'', 'ଭିଏତନାମ ଶିକ୍ଷାଦିଏ, ଲଢ଼େଇ କରି ବଞ୍ଚି ହୁଏ', 'ଛଟେଇ ହେଲେ ଲଢ଼େଇ ହେବ, ଲଢ଼େଇ ହେଲେ ନିଆଁ ଜଳିବ' ଆଦି ସ୍ଲୋଗାନ ଦେଇ ରାଜରାସ୍ତାକୁ ପ୍ରକମ୍ପିତ କରି ଦାବି ହାସଲ ପାଇଁ ଆଗେଇ ଆସିଥିଲେ ।

ଏହି ଆନ୍ଦୋଳନ ଓଡ଼ିଶାର ଅଗଣିତ ଶିକ୍ଷକମାନଙ୍କ ମନରେ ଏକ ନୂତନ ଆଶା ସଞ୍ଚାର କରିଥିଲା । ପରବର୍ତ୍ତୀ  କାଳରେ ଏହି ସମନ୍ୱୟ ସମିତି ୧୯୭୧ ମସିହା ସେପ୍ଟେମ୍ବର ୫ ତାରିଖ 'ଗୁରୁଦିବସ' ଦିନ ଭୁବନେଶ୍ୱର ଭଞ୍ଜ କଳାମଣ୍ଡପ ଠାରେ 'ଶିକ୍ଷକ ମହାସଂଘ' ନାମରେ ଜନ୍ମ ନେଲା । ଏହି ସଭାରେ ଓଡ଼ିଶାର ପ୍ରାୟ ୫୦୦ ଶିକ୍ଷକ ବିଭିନ୍ନ ଅଞ୍ଚଳରୁ ଯୋଗ ଦେଇଥିଲେ । ଏହି ସଂଗଠନର ସଭାପତି ଦାୟିତ୍ୱରେ ପୁଣ୍ୟାତ୍ମା ବନମାଳୀ ବ୍ରହ୍ମଚାରୀ ଓ ସାଧାରଣ ସମ୍ପାଦକ ଦାୟିତ୍ୱରେ ପ୍ରଫେସର ଅବନୀ ବରାଳଙ୍କୁ ସର୍ବସମ୍ମତ ନିର୍ବାଚିତ କରାଗଲା । ମଣିକାଞ୍ଚନର ସଂଯୋଗ ଓଡ଼ିଶାର ଶିକ୍ଷକ ସମାଜକୁ ଏକ ନୂଆ ଦିଗନ୍ତ ଦେଇଥିଲା । ଶିକ୍ଷକ ମହାସଂଘ ଡାକରାରେ ଓଡ଼ିଶାର ହଜାର ହଜାର ଶିକ୍ଷକ, ଶିକ୍ଷୟିତ୍ରୀ, ଅଧ୍ୟାପକ, ଅଧ୍ୟାପିକା ଓ ଶିକ୍ଷା କର୍ମଚାରୀ ଯୋଗଦେଇ ସେମାନଙ୍କର ନ୍ୟାଯ୍ୟ ଦାବି ପୂରଣ କରିବାର ସାମର୍ଥ୍ୟ ଲାଭ ପ୍ରଫେସର ଅବନୀ ବରାଳଙ୍କ ବଳିଷ୍ଠ ନେତୃତ୍ୱ ଯୋଗୁଁ ହିଁ ସମ୍ଭବ ହୋଇଥିଲା ।

୧୯୬୯ର ଶିକ୍ଷା ଆଇନ, ୧୯୭୧ର ଦରମା ସମୀକରଣ, ୧୯୭୪ର ପ୍ରତ୍ୟକ୍ଷ ଦରମା, ୧୯୭୬ର ଚାକିରି ସର୍ତ୍ତାବଳୀ, ୧୯୭୭ର ଛୁଟିନିୟମ, ୧୯୮୦ର ବଦଳି ଆଇନ, ୧୯୮୨ର ପେନସନ ରୁଲ୍, ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ମାଗଣା ଶିକ୍ଷା ପ୍ରଦାନ କେବଳ ଶିକ୍ଷକ ମହାସଂଘର ଆନ୍ଦୋଳନ ଦ୍ୱାରା ସମ୍ଭବ ହୋଇଛି । ଏହା ବ୍ୟତୀତ ପ୍ରଫେସର ବରାଳଙ୍କ ନେତୃତ୍ୱରେ ଓଡ଼ିଶାର ଅଗଣିତ ଛାତ୍ରଛାତ୍ରୀମାନଙ୍କୁ ମଧ୍ୟାହ୍ନ ଭୋଜନ, ପାଠ୍ୟ ପୁସ୍ତକ ଓ ପୋଷାକ ଯୋଗାଇ ଦେବା ପାଇଁ ସରକାରଙ୍କଠାରେ ଦୃଢ଼ଦାବି ଉପସ୍ଥାପିତ କରି ଏହାକୁ ସାକାର କରିବା ପାଇଁ ଶିକ୍ଷକ ମହାସଂଘ ଆନ୍ଦୋଳନର ମଇଦାନକୁ ଓହ୍ଲାଇଥିଲା । ପରବର୍ତ୍ତୀ ଅବସ୍ଥାରେ ଆନ୍ଦୋଳନର ଫଳ ସ୍ୱରୂପ ଆଜି ଓଡ଼ିଶାର ଅଗଣିତ ଛାତ୍ରଛାତ୍ରୀମାନଙ୍କୁ ପାଠ୍ୟପୁସ୍ତକ ଠାରୁ ଆରମ୍ଭ କରି ପୋଷାକ ପର୍ଯ୍ୟନ୍ତ ମାଗଣାରେ ସରକାରୀ ଯୋଗାଇ ଦେଉଛନ୍ତି । ଏଥିପାଇଁ ପ୍ରଫେସର ବରାଳଙ୍କୁ ହିଁ ଶ୍ରେୟ ଦିଆଯାଇପାରେ । ସମଗ୍ର ଓଡ଼ିଶାରେ ଶିକ୍ଷକମାନଙ୍କ ମଧ୍ୟରେ ଏକ ବୈପ୍ଳବିକ ଚିନ୍ତାଧାରାର ବୀଜ ବପନ କରି ''ଓଡ଼ିଶା ବଞ୍ଚାଅ ଓ ଶିକ୍ଷା ବଞ୍ଚାଅ' ପରି ନ୍ୟାଯ୍ୟ ଦାବି ସରକାରଙ୍କ ଠାରେ ଉପସ୍ଥାପିତ କରିବା ପାଇଁ ସେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ସଂଗ୍ରାମ ଜାରି ରଖିଥିଲେ । ଜଣେ ବିଶିଷ୍ଟ ଶିକ୍ଷାବିତ, ସୁସାହିତ୍ୟିକ, ଔପନ୍ୟାସିକ, ସୁସଂଗଠକ, ସୁବକ୍ତା, ଶିକ୍ଷା ସଂସ୍କାରକ, ଗ୍ରନ୍ଥକାର ଭାବରେ କେବଳ ଓଡ଼ିଶା ନୁହଁନ୍ତି ସମଗ୍ର ଭାରତବର୍ଷରେ ସୁପରିଚିତ । ସେ ମଧ୍ୟ ବିଶ୍ୱ ଶିକ୍ଷକ ସଂଗଠନର ଉପସଭାପତି ଭାବରେ କାର୍ଯ୍ୟନିର୍ବାହ କରି ଉଚ୍ଚ ପ୍ରଶଂସିତ ହୋଇପାରିଛନ୍ତି ।

ସମଗ୍ର ଓଡ଼ିଶାର ମାନଚିତ୍ରକୁ ସେ ତନ ତନ କରି ପରଖିଛନ୍ତି । ଓଡ଼ିଶାର ସମସ୍ତ ଅଞ୍ଚଳକୁ ସେ ବୁଲି ଦେଖିଛନ୍ତି । ସମସ୍ତ ବିଦ୍ୟାଳୟ, ମହାବିଦ୍ୟାଳୟ ଅଞ୍ଚଳକୁ ବୁଲି ଯାଇଛନ୍ତି, ସମସ୍ତଙ୍କ ସହ ମିଶିଛନ୍ତି । ସମସ୍ତଙ୍କ ହୃଦୟ ଜୟକରି ପାରିଛନ୍ତି ବହୁତ । କିଛି କରିବାର ଆଶା ନେଇ ସଂଗ୍ରାମ ଜାରି ରଖିଥିଲା ବେଳେ କାଳ ସହିଲା ନାହିଁ ସେ ଆରପାରିକୁ ଚାଲି ଗଲେ । ମାତ୍ର ହେ ସଂଗ୍ରାମୀ ସାଥୀ, ତୁମେ ହେଉଛ ଓଡ଼ିଶାର ଶିକ୍ଷାକାଶର ଧ୍ରୁବତାରା । ତୁମେ ଆଜି ସମସ୍ତ ହୃଦୟରେ ରହିଛ । ତୁମର ମରଣ ଆମେ ଉପଲବ୍ଧି କରି ପାରୁନାହୁଁ । କୁନ୍ତଳା କୁମାରୀଙ୍କ ଭାଷାରେ –

ଶୁଣହେ ମଣିଷ ଭାଇ !
ଝୁରି ମରିବାକୁ ବୁଡ଼ି ମରିବାକୁ ମଣିଷ ଜନମି ନାହିଁ ।
ଶୁଣହେ ମଣିଷ ଭାଇ !
ଅମୃତ ଦୀପ୍ତି ସନ୍ତାନ ତୁମେ
ମରଣ ତୁମର କାହିଁ ?

* ପୂର୍ବତନ ସହ ସଂପାଦକ
ଶିକ୍ଷକ ଦର୍ପଣ, ଓଲ୍ଡା

* * *

# ବିଶ୍ୱବରେଣ୍ୟ ଅବନୀ ବରାଳ

✱ ଅଧ୍ୟାପକ ଗୋପାଳକୃଷ୍ଣ ଦାସ

ଅନନ୍ୟ ଚିନ୍ତାନାୟକ, ଉତ୍ସର୍ଗୀକୃତ ଐତିହାସିକ ବ୍ୟକ୍ତିତ୍ୱ ଅବନୀ କୁମାର ବରାଳ ଏକ ଅନିର୍ବାଣ ଜ୍ୟୋତି, ଶିକ୍ଷାକାଶର ଧ୍ରୁବତାରା । ଶିକ୍ଷକକୁଳର ଏହି ଦ୍ରୋଣ ଥିଲେ ଅକ୍ଷୟକୀର୍ତ୍ତିର କୁମ୍ଭ କାରିଗର । ବୃତ୍ତିରେ ଶିକ୍ଷକ, ପ୍ରବୃତ୍ତିରେ ମାନବ ଉପାସକ, ଏହି ପ୍ରତିଭାଧର ଥିଲେ ଭାରତର ସର୍ବାଗ୍ରଗଣ୍ୟ ଶିକ୍ଷକ ନେତା ।

ଓଡ଼ିଶାର ଶିକ୍ଷକ ଆନ୍ଦୋଳନ, ସାମ୍ୟବାଦୀ ଗୋଡିମୁକ୍ତି ଆନ୍ଦୋଳନର ଅଗ୍ରଦୂତ, ପଥିକୃତ ନାୟକ, ଶତ ସଂଗ୍ରାମର ଅପରାଜେୟ ଅବିଶ୍ରାନ୍ତ ସେନାପତି, ଅବନୀ ବରାଳ ବାସ୍ତବିକ ଥିଲେ ଏକ ଲୌହମାନବ । ତାଙ୍କ ଦୟାର୍ଦ୍ର ହୃଦୟତଳେ ଢେଉ ଭାଙ୍ଗୁଥିଲା ସ୍ନେହ ସଂପ୍ରୀତିର, ତ୍ୟାଗ ତିତିକ୍ଷାର ଢଳଢ଼ଳ ପାରଦର ପାରାବାର । ଶାନ୍ତି-ମୈତ୍ରୀ-ମୁକ୍ତି ଆନ୍ଦୋଳନର ପ୍ରମୁଖ କାଣ୍ଡାରି ଥିଲେ ଶାନ୍ତିତୀର୍ଥ ହୀରୋସୀମା ଗ୍ରନ୍ଥର ଶାନ୍ତିକାମୀ ଯଶସ୍ୱୀ ସାହିତ୍ୟିକ । ଶିକ୍ଷାର ସ୍ଥିତି-ଦୁଃସ୍ଥିତି, ଗତି-ପ୍ରଗତି, ସମସ୍ୟା ସମାଧାନର ଏହି ପ୍ରବୀଣ ଦିଗ୍‌ଦର୍ଶକ ଥିଲେ ଭାରତର ଶିକ୍ଷା ଅଧିକାର ଆଇନ ପ୍ରବର୍ତ୍ତନର ପ୍ରମୁଖ ପୁରୋଧା । ଶିକ୍ଷକକୁଳର ଏହି ମାନରକ୍ଷକ ଜାତୀୟ ପ୍ରାଦେଶିକ ଶିକ୍ଷାକୁ ଦେଇଥିଲେ ଆବିଶ୍ୱ ପରିଚିତି, ସ୍ୱୀକୃତି ।

ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳଧରି ଓଡ଼ିଶାର ଶିକ୍ଷା, ସାହିତ୍ୟ, କଳା, ସଂସ୍କୃତି, ସଂଗଠନ, ସମାଜ ସେବା, ରାଜନୀତି କ୍ଷେତ୍ରରେ ତାଙ୍କର ରହିଛି ଅସାମାନ୍ୟ ଅବଦାନ । ଜନଚେତନାର ଅଭ୍ୟୁଦୟ କ୍ଷେତ୍ରରେ ସେ ଏକ ଉତ୍ସର୍ଗୀକୃତ ପ୍ରାଣ । ଜନଚେତନାର ଅଭ୍ୟୁଦୟ କ୍ଷେତ୍ରରେ ସେ ଅମିତ ବିକ୍ରମଶାଳୀ ବିପ୍ଳବୀ । ଦୁଃଖ, ଦୈନ୍ୟ, ଯନ୍ତ୍ରଣା ଜର୍ଜରିତ ଅଗଣନ ବ୍ୟକ୍ତିଙ୍କ ଲୁହ କୋହର ନିବାରଣ ପାଇଁ ସେ ସାଜିଥିଲେ ରୁଦ୍ର ଭୈରବ, ଦୂରନ୍ତ ବୈତାଳିକ । ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ, ଯୁଦ୍ଧବିରୋଧୀ ଶାନ୍ତି ଅଭିଯାନର ସେ ଥିଲେ ସାର୍ଥକ ସାରଥି, ସଂଗ୍ରାମୀ, ମହାରଥୀ ।

•

ବିଶ୍ୱପଥିକ ଅବନୀ ଋଷ, ଜର୍ମାନୀ, ଫ୍ରାନ୍ସ, ପୋଲାଣ୍ଡ ପର୍ତ୍ତୁଗାଲ, ଫିଲଫାଇନ୍ସ, କ୍ୟୁବା, ମରିସସ୍, ଥାଇଲାଣ୍ଡ ପ୍ରଭୃତି ୪୧ଟି ଦେଶରେ ବିଶ୍ୱବିଦ୍ୟାଳୟ, ବିଶ୍ୱ ଶିକ୍ଷକ ୟୁନିୟନ, ଟ୍ରେଡ୍ ୟୁନିୟନ, ଆନ୍ତର୍ଜାତୀୟ ଶିକ୍ଷା ସମ୍ମିଳନୀ କର୍ମଶାଳାରେ ଉଦାତ୍ତ ଅଭିଭାଷଣ ଦେଇ ବିଦଗ୍ଧ ଶ୍ରୋତାଙ୍କୁ କରିଛନ୍ତି ମନ୍ତ୍ରମୁଗ୍ଧ, ଦର୍ଶାଇଛନ୍ତି ନୂତନ ଦିଶା ଓ ଦିଗନ୍ତ ।

ନିଜ ସୃଷ୍ଟିକ୍ଷେତ୍ରରେ ଧ୍ୟାନସ୍ଥ ଯଶସ୍ୱୀପ୍ରାବନ୍ଧିକ, ସାର୍ଥକକଥାକାର, ନାଟ୍ୟକାର, ...ଣକାର ସ୍ରଷ୍ଟା ଭାବରେ ସେ ସ୍ମରଣୀୟ । ତାଙ୍କ ସାରସ୍ୱତ ସଂଭାର ଚିନ୍ତାରାଜ୍ୟରେ ...କରେ ଆଲୋଡ଼ନ । ସର୍ବତ୍ର ପ୍ରତିଫଳିତ ପ୍ରଗତିବାଦୀ ଚେତନାର ସ୍ୱର, ବିଦ୍ରୋହୀ ଆତ୍ମାର ଆହ୍ୱାନ, ଭାରତୀୟ  ଜୀବନ ଧାରାର ଏକ ବାସ୍ତବ ରୂପାୟନ । ସର୍ବଜନ ଓ ସର୍ବାକାଳ ପାଇଁ ସେ ଛାଡ଼ି ଯାଇଛନ୍ତି ଏକ କ୍ଲାସିକ୍ ଆବେଦନ । ପ୍ରାଚ୍ୟ ଓ ପାଶ୍ଚାତ୍ୟ, ସାମ୍ରାଜ୍ୟବାଦୀ, ସାମ୍ୟବାଦୀ ଦେଶର ଲୋକ ଚରିତ୍ର, ସାମାଜିକ ଜୀବନର ତୁଳନାତ୍ମକ ଆଲେଖ୍ୟ ତାଙ୍କ ଭ୍ରମଣ ସାହିତ୍ୟ, କିଶୋର ଉପନ୍ୟାସ ଓ ଶିକ୍ଷା ସଂପର୍କୀତ ଗ୍ରନ୍ଥକୁ ଦେଇଛି ଶାଶ୍ୱତ ଆବେଦନ । ଇପଟା ଓ ନବନାଟ୍ୟ ଆନ୍ଦୋଳନର ରୂପକାର ଭାବେ ଗଣଚେତନାର ଉଦ୍ରେକକାରୀ ବହୁବିଧ ପ୍ରତିଭା ସାଧନା ଓ ସିଦ୍ଧି ପାଇଁ ଶିକ୍ଷା ଜଗତରେ ସେ ମହାନ ।

ହେ ମନସ୍ୱୀ ! ହେ ମନୀଷୀ ! ଆପଣଙ୍କ ପାଇଁ ଶିକ୍ଷକକୁଳ ଯୁଗଯୁଗ ପାଇଁ କରିବେ ଜୟ ଜୟଗାନ । ମୋର ଅଶ୍ରୁଳ ପ୍ରଣାମ ଘେନ ।

* * *

* ପ୍ରାଣନାଥ ସ୍ୱୟଂଶାସିତ ମହାବିଦ୍ୟାଳୟ
ଖୋରଧା , ଫୋନ୍ - ୯୪୩୮୪୬୮୬୯୦

# ମହାନାୟକ

✱ ଶ୍ରୀ ରବୀନ୍ଦ୍ରନାଥ ପଟ୍ଟନାୟକ

ମୁଁ କାର୍ଯ୍ୟ ଉପଲକ୍ଷେ ବାରିପଦାରେ ରହୁଛି । ଗୁରୁବାର ଅପରାହ୍ଣରେ ପ୍ୟାରୀବାବୁ ମୋତେ ଫୋନ୍ କରି କହିଲେ-ଅବନୀସାର୍ ଚାଲିଗଲେ । ମୁଁ ହତବାକ୍ ହୋଇଗଲି । ସେଦିନ ଯିବା ସମ୍ଭବ ନ ଥିଲା । ତା'ପର ଦିନ ଭୋର ୫ଟା ଟ୍ରେନ୍ ଯୋଗେ କଟଣୀ ବାହାରିଲି; ମାତ୍ର ଟ୍ରେନ୍‌ର ଆଶାତୀତ ବିଳମ୍ବ ମୋତେ ତାଙ୍କର ଶେଷ ଦର୍ଶନ ଲାଭରୁ ବଞ୍ଚିତ କଲା । ଶ୍ମଶାନ ଘାଟରେ ଉପସ୍ଥିତ ଥିବା କିଛି ବନ୍ଧୁଙ୍କ ଠାରୁ ଖବର ନେଉଥାଏ । କଟଣୀରେ ପହଞ୍ଚି ବାହାରିଲା ବେଳକୁ ତାଙ୍କର ମର ଶରୀରକୁ ଚିତାଗ୍ନି ପାଇଁ ନିଆଯାଉଥାଏ । ମୋର ବ୍ୟଗ୍ରତା ଦେଖି ବନ୍ଧୁ ତ୍ରିନାଥବାବୁ ମୋବାଇଲ୍ ଯୋଗେ ତାଙ୍କ ପାଇଁ ଦିଆଯାଉଥିବା ସ୍ଲୋଗାନ୍ ଶୁଣାଇଲେ । 'ଅବନୀଭାଇ ଜିନ୍ଦାବାଦ', 'ଅବନୀଭାଇ ଅମର ରହେ', 'ଅବନୀଭାଇ ଯୁଗଯୁଗ ଜିଓ' ଇତ୍ୟାଦି ଧ୍ୱନି ଓ କ୍ରନ୍ଦନରୋଳରେ ଖୋରଧା ମାଟି ପ୍ରକମ୍ପିତ ହୋଉଥାଏ । କିଛି ପରିମାଣରେ ମୋ ମନରେ ଥିବା ଉଦ୍‌ବେଗ ହ୍ରାସ ପାଇଲା ।

ଅବନୀ ସାର୍ ଏକାଧାରରେ ଜଣେ କବି, ଲେଖକ, ସମାଲୋଚକ, ରାଜନୀତିଜ୍ଞ, ବଳିଷ୍ଠ ସଂଗଠକ ଭାବେ ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ ; କିନ୍ତୁ ଆମ ପାଇଁ ସେ ଜଣେ ପ୍ରଚଣ୍ଡ ପ୍ରତିଭାମାନ ଶିକ୍ଷକନେତା । ଯାହାର ନେତୃତ୍ୱରେ ସମଗ୍ର ଶିକ୍ଷକକୁଳ ସ୍ୱାଭିମାନର ସହ ସମାଜରେ ବଞ୍ଚିବାର ରାହା ପାଇଛି । ସାରା ଜୀବନ ସେ ଶିକ୍ଷକମାନଙ୍କର ସମସ୍ୟା ସହ ଜଡ଼ିତ ଥିଲେ । ଅନେକ ଶିକ୍ଷକ ଆନ୍ଦୋଳନରେ ଆମେ ତାଙ୍କ ସହ ସାମିଲ ଥାଇ କାର୍ଯ୍ୟ କରିଛୁ । ୧୯୮୪ ମସିହାରେ ଯେଉଁ ଐତିହାସିକ ଆନ୍ଦୋଳନ, ମନେପଡ଼ିଲେ ଶରୀର ରୋମାଞ୍ଚିତ ହୋଇଉଠେ । ସମଗ୍ର ଭୁବନେଶ୍ୱରରେ ୧୪୪ ଧାରା ଜାରି ହୋଇଥାଏ । ଭୁବନେଶ୍ୱରରେ ଯେକୌଣସି ସ୍ଥାନରେ ଶିକ୍ଷକମାନଙ୍କୁ ଗିରଫ କରାଯାଉଥାଏ । ମହାସଂଘ କାର୍ଯ୍ୟାଳୟରେ ସାର୍ ବହୁତ ଚିନ୍ତିତ ଥାଆନ୍ତି; ମାତ୍ର କ୍ରମଶଃ ରେଳ ଷ୍ଟେସନରେ ଶିକ୍ଷକ ସଂଖ୍ୟା ବଢ଼ିବାରେ ଲାଗିଲା । ର ୟାଲି ଆରମ୍ଭ ହେଲା । ଅବନୀ ସାର୍ ସର୍ବାଗ୍ରେ ଥାଆନ୍ତି ।

ତାଙ୍କ ପଛରେ ଥାଆନ୍ତି ଅଗଣିତ ଶିକ୍ଷକ ନେତା ଓ ହଜାର ହଜାର ଶିକ୍ଷକ । ର୍ୟାଲି ଦେଖି କିଛି ରାଜନେତା କହୁଥାଆନ୍ତି ଏହି ବିଶାଳ ର୍ୟାଲିକୁ ଅବନୀ ସାର୍ ପରିଚାଳନା କରିବେ କିପରି ? କାରଣ ପ୍ରତିକ୍ରିୟାଶୀଳ ଶିକ୍ଷକମାନଙ୍କୁ ଶୃଙ୍ଖଳିତ ଭାବରେ ପରିଚାଳିତ କରିବା ଅସମ୍ଭବ ମନେହେଉଥିଲା; ମାତ୍ର ସାର୍‌ଙ୍କର ଶିକ୍ଷକମାନଙ୍କ ଉପରେ ଭରଷା ଥିବା । ଶହ ଶହ ପୋଲିସ କର୍ମଚାରୀ ଉପସ୍ଥିତ ଥାଆନ୍ତି, ଆମ ର୍ୟାଲି ଯେଉଁ ଆଡ଼େ ଗଲା ସେମାନେ ପଛେଇ ପଛେଇ ଚାଲୁଥାଆନ୍ତି । ସାର୍ ଘୋଷଣା କଲେ, ଆମେ ସରକାରଙ୍କ ଜାରି ଧାରାକୁ ଭଙ୍ଗ କରୁଛୁ ଏବଂ ତାହା ଆପେ ଆପେ ପ୍ରତ୍ୟାହୃତ ହୋଇଛି, ଏଣୁ ଆମର ବିଜୟ ହୋଇ ସାରିଛି । ''ରେଡ୍‌ଲାଇଟ୍' ପାଖରେ ର୍ୟାଲି ପହଞ୍ଚିଲାପରେ ପୋଲିସମାନେ ପ୍ରମାଦ ଗଣିଲେ , ଉପସ୍ଥିତ ଲୋକେ ପରବର୍ତ୍ତୀ ମୁହୂର୍ତ୍ତକୁ ଅପେକ୍ଷା କରିଥାଆନ୍ତି । ଚତୁରତାର ସହ ସାର୍ ହଠାତ୍ ର୍ୟାଲିର ମୋଡ଼ ବଦଳାଇ ମହାସଂଘ ଆଡ଼କୁ ନେଲେ, ସମସ୍ତେ ଆଶ୍ୱସ୍ତ ହେଲେ । ଯେଉଁ ସରକାର ଆନ୍ଦୋଳନ ସ୍ଥଗିତ ନ କରିବା ପର୍ଯ୍ୟନ୍ତ ଆଲୋଚନାକୁ ଡାକିବେ ନାହିଁ ବୋଲି ଗୁରୁ ଗମ୍ଭୀର ସ୍ୱରରେ ଘୋଷଣା କରିଥିଲେ, ସେ ତୁରନ୍ତ ମହାସଂଘକୁ ଆଲୋଚନା ପାଇଁ ନିମନ୍ତ୍ରଣ କଲେ । ଶିକ୍ଷକମାନଙ୍କର ଏହି ଦୁର୍ବାର ଆନ୍ଦୋଳନ ସେହି ମହାନାୟକଙ୍କ ପାଇଁ ସଫଳ ହେଲା ।

ମହାସଂଘର ରୌପ୍ୟଜୟନ୍ତୀ କାର୍ଯ୍ୟ ଚାଲିଥାଏ । ଭାରତବର୍ଷର ସବୁ ପ୍ରାନ୍ତରୁ ଶିକ୍ଷକନେତାମାନେ ଆସିବାର ଥାଏ । ଆମର ଦାୟିତ୍ୱ ଥିଲା ରେଳଷ୍ଟେସନରେ ସାରାରାତି ଉଜାଗର ରହି ଗାଡ଼ିରେ ଆସୁଥିବା ଶିକ୍ଷକନେତାମାନଙ୍କୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ତାଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନକୁ ପଠାଇ ତାଙ୍କ ରହଣୀ ବ୍ୟବସ୍ଥା କରିବା । ପ୍ୟାରୀବାବୁ, ଅକ୍ଷୟବାବୁ , ତ୍ରିଲୋଚନବାବୁ, ମୁଁ ଏବଂ ଅନ୍ୟ କେତେକ ଶିକ୍ଷକ ଷ୍ଟେସନରେ ସଂଘ ବ୍ୟାନର ଟାଙ୍ଗି ରହିଲୁ । ସାରାରାତି ଆସିଥିବା ଆଗନ୍ତୁକ ନେତାମାନଙ୍କୁ ଯଥାସ୍ଥାନକୁ ପଠାଇଲୁ । ସାର୍ ଏଥିରେ ଖୁସି ହୋଇ କହି ପକାଇଲେ, ''ଯେଉଁ ଏମ୍.ବି.ଡ଼ି. ବ୍ୟାଗ ଆସିଛି ଏମାନଙ୍କୁ ଗୋଟେ ଗୋଟେ ଦିଅ ।'' ମାତ୍ର କେତେ ଜଣ ଏହି ବ୍ୟାଗଗୁଡ଼ିକ ଭି.ଆଇ.ପି.ମାନଙ୍କ ପାଇଁ ରହିଛି ବୋଲି କହିବାରୁ ସାର୍ ବିରକ୍ତ ହୋଇ କହିଲେ, ଏମାନେ ଭି.ଆଇ.ପି.ଙ୍କ ଠାରୁ ଅଧିକ । ଏମାନଙ୍କୁ ଆଗଦିଅ ବୋଲି ନିର୍ଦ୍ଦେଶ ଦେଲେ ।

ସାର୍‌ ଥିଲେ ଜଣେ ନିଛକ ବାସ୍ତବବାଦୀ ବ୍ୟକ୍ତି । ଅବାସ୍ତବ ଓ ଅବାନ୍ତର କଥା ଶୁଣିଲେ ପ୍ରତିକ୍ରିୟା ପ୍ରକାଶ କରିଥା'ନ୍ତି । ଥରେ ଆମର କିଛି ଶିକ୍ଷକଙ୍କ ଉପସ୍ଥିତିରେ "୧୯୯୭ କ୍ୟାଡ଼ର ରୁଲ" ବାବଦରେ ଆଲୋଚନା ଚାଲିଥାଏ । ସେ କହିଲେ –ତୁମମାନଙ୍କ ପାଇଁ ଏହି ନିୟମ "ଏକ ବିଗ୍‌ ଜିରୋ" । ମାତ୍ର ମୁଁ କହିଲି –ସାର୍‌, ଆମର ଜଣେ ନେତୃତ୍ୱ କହିଛନ୍ତି ସେ ଆଇନ୍‌ ବଳରେ ତୁମ୍ଭମାନଙ୍କର ସମସ୍ତ ତୃତୀୟ ବର୍ଗର ଶିକ୍ଷକ ନିକଟରେ ଦ୍ୱିତୀୟ ବର୍ଗକୁ ପ୍ରମୋଶନ ପାଇବେ । ସେ ମୋତେ ପଚାରିଲେ, କିଏ କହୁଥିଲା ? ମୁଁ ନାମ ପ୍ରକାଶ କରିବା ପରେ ସେ କହିଲେ– "ତୁମେ ବୋଧେ ଜାଣିନ ସେ ମହାଶୟ ପୃଥିବୀର ଜଣେ ସର୍ବଶ୍ରେଷ୍ଠ ଅନାବଶ୍ୟକ ମିଥ୍ୟାବାଦୀ । ସେହି ନିୟମ ମଧ୍ୟରେ ଯେଉଁ ଅଦୃଶ୍ୟ ତୀକ୍ଷ୍ଣ ଅସ୍ତ୍ର ଝୁଲୁଛି, ତାହା ଯେକୌଣସି ସମୟରେ ତୁମ୍ଭମାନଙ୍କୁ କ୍ଷତାକ୍ତ କରିବ ।" ତାହା ପରବର୍ତ୍ତୀ ସମୟରେ ସତ୍ୟ ହେଲା ।

ପବିତ୍ର କାର୍ତ୍ତିକ ମାସରେ ତାଙ୍କର ମହାପ୍ରୟାଣ ଘଟିଛି । ତାଙ୍କର ପବିତ୍ର ଆତ୍ମା ସଦ୍‌ଗତି ଲାଭକରୁ, ଏହାହିଁ ପରମେଶ୍ୱରଙ୍କ ନିକଟରେ କାମନା ।

* * *

* ପୂର୍ବତନ ସହ ସଂପାଦକ, ଓଲ୍‌ଷ୍ଟା

# ଅବର୍ଣ୍ଣନୀୟ ବର୍ଣ୍ଣବିଭା

* ଶ୍ରୀ କୃପାସିନ୍ଧୁ ବିଶ୍ୱାଳ

ଓଡ଼ିଶା ଶିକ୍ଷା ଜଗତର ଏକ ବିସ୍ମୟକର ବ୍ୟକ୍ତିତ୍ୱ, ବହୁମୁଖୀ ପ୍ରତିଭାର ପ୍ରତିଭୂ, ଶତସଂଗ୍ରାମର ଅପରାଜେୟ ଯୋଦ୍ଧା, ପ୍ରଖ୍ୟାତ ସାରସ୍ୱତ ସାଧକ, ବିଶିଷ୍ଟ ଶିକ୍ଷକନେତା ଓ ଶିକ୍ଷାବିତ୍, ରଙ୍ଗମଞ୍ଚର ନାଟ୍ୟକାର ଓ ନାଟ୍ୟଶିଳ୍ପୀ ସର୍ବହରାର ସାଥୀ ଓ ଶିକ୍ଷକ ମହାସଂଘର ପ୍ରତିଷ୍ଠାତା ସ୍ୱର୍ଗତ ଅବନୀ ବରାଳଙ୍କର ଜନ୍ମ ୧୯୩୫ ମସିହା ଜୁନ୍ ମାସ ୩ ତାରିଖରେ ଅବିଭକ୍ତ କଟକ ଜିଲ୍ଲା ତଥା ବର୍ତ୍ତମାନର ଜଗତସିଂହପୁର ଜିଲ୍ଲାର ବିରଡ଼ି ବ୍ଲକ ଅନ୍ତର୍ଗତ ହଳଦିଆପଡ଼ା ଗ୍ରାମରେ । ପିତା ଭ୍ରମରବର ବରାଳ ଓ ମାତା ଜେମାମଣି ବରାଳ । ପିତାଙ୍କର ବୃତ୍ତି ଥିଲା ପୋଷ୍ଟମାଷ୍ଟର । ତେଣୁ କେନ୍ଦ୍ରାପଡ଼ାରେ ପିତାଙ୍କର ଅବସ୍ଥାନ କାରଣରୁ ସେ ସେଇଠି ମାତୃଗର୍ଭରୁ ଭୂମିଷ୍ଠ ହୋଇଥିଲେ । ସ୍ୱର୍ଗତ ବରାଳ ପିତାମାତାଙ୍କର ଚତୁର୍ଥ ସନ୍ତାନ । ତାଙ୍କ ଉପରେ ଦୁଇ ଭଉଣୀ ଓ ଜଣେ ଭାଇ ଏବଂ ତଳେ ଭଉଣୀଟିଏ ।

ପିତାମାତାଙ୍କର ସଯତ୍ନରୁ ଶୈଶବର ଅନ୍ତିମ କାଳରେ ସେ ଖଡ଼ି ଛୁଇଁବାକୁ ପାଠଶାଳାରେ ପ୍ରବେଶ କରିଥିଲେ ପ୍ରାଥମିକ ଶିକ୍ଷା ନିମନ୍ତେ ଘୂରି ବୁଲିଥିଲେ, ବାଲେଶ୍ୱର ପ୍ରାଥମିକ ବିଦ୍ୟାଳୟ, ବାଲେଶ୍ୱର ମିଶନ ଉ.ପ୍ରା. ବାଳିକା ବିଦ୍ୟାଳୟ, ଅନୁଗୋଳ ଅମଲାପଡ଼ା ପ୍ରାଥମିକ ବିଦ୍ୟାଳୟ, ଅଲାଣ୍ଡୋ ଉ.ପ୍ରା. ବିଦ୍ୟାଳୟ ଓ କଟକ ପ୍ୟାରୀମୋହନ ଏକାଡ଼େମୀ । କଟକ ପ୍ୟାରୀମୋହନ ଏକାଡ଼େମୀରେ ଷଷ୍ଠ ଶ୍ରେଣୀର ଅଧାପର୍ଯ୍ୟନ୍ତ ପଢ଼ି ପୁରୀ ଜିଲ୍ଲା ସ୍କୁଲରେ ଷଷ୍ଠ ଶ୍ରେଣୀର ବାକିଥିବା ଅର୍ଦ୍ଧାଂଶ ସହିତ ସପ୍ତମ ଓ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରି ଅଳ୍ପ କେଇଦିନ ସେଠାରେ ନବମ ଶ୍ରେଣୀ ପଢ଼ିଥିଲେ । ପୁରୀରୁ ଆସି କଟକର ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ନାମ ଲେଖାଇ ପାଠ ପଢ଼ିଲେ । ସେଇଠୁ ମାଟ୍ରିକ୍ ଦ୍ୱିତୀୟ ଶ୍ରେଣୀରେ ପାସ୍ କରି ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଆଇ.ଏସ୍.ସି. ପଢ଼ିବାକୁ ଯାଇ ପରିବାରଙ୍କ ଆଗୋଚରରେ ଆଇ.ଏ.ପଢ଼ା କାର୍ଯ୍ୟ ଶେଷ କଲେ । କଟକ ଖ୍ରୀଷ୍ଟ କଲେଜରୁ ସ୍ନାତକ ଡିଗ୍ରୀ ହାସଲ କରିବା ପରେ ଓଡ଼ିଆରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ ରେଭେନ୍‌ସା କଲେଜରୁ । ଅଧ୍ୟୟନ କାର୍ଯ୍ୟ ସମାପ୍ତ ପରେ କୌଣସି ବଡ଼ ଚାକିରିର

ମୋହକୁ ଏଡ଼େଇ ଦେଇ ଶିକ୍ଷକତା ପରି ଏକ ପବିତ୍ର ବୃତ୍ତିକୁ ଆଦରି ନେଇ ସେ ଅବିଭକ୍ତ କଟକ ଜିଲ୍ଲାର ତେଲଦିଆ ଠାରେ ସ୍ଥାପିତ ଏକ ଘରୋଇ ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବରେ କାର୍ଯ୍ୟରେ ଯୋଗ ଦେଇଥିଲେ । ସେଠାରେ ଅଧ୍ୟାପନା କାର୍ଯ୍ୟ ଆରମ୍ଭ କରି ଶିକ୍ଷାନୁଷ୍ଠାନମାନଙ୍କ ପ୍ରତି ସରକାରଙ୍କର ଉଦାସୀନ ମନୋବୃତ୍ତି କାରଣରୁ ଅବହେଳିତ ଶିକ୍ଷା, ଶିକ୍ଷକ ଓ ଶିକ୍ଷାବ୍ୟବସ୍ଥାରେ ବୀତସ୍ପୃହ ହୋଇ ସେଠାରୁ ଇସ୍ତଫା ଦେଇ ବାହାରି ଆସିଲେ । ଚିନ୍ତାକଲେ ଆଉ ଚାକିରି କରିବେ ନାହିଁ । 'ଆଧୁନିକ ପ୍ରକାଶନୀ' ନାମରେ ବହି ଦୋକାନ ଓ ପ୍ରକାଶନ ସଂସ୍ଥା ଆରମ୍ଭ କଲେ । ଏହି ପ୍ରକାଶନୀ ସଂସ୍ଥା ତରଫରୁ କେତେଗୁଡ଼ିଏ ବହି ମଧ୍ୟ ପ୍ରକାଶ କଲେ । ତେଲଦିଆ ସ୍କୁଲରେ ଶିକ୍ଷକତା ଜୀବନ ଆରମ୍ଭ କରି କେତେକ ତିକ୍ତ ଓ ନୈରାଶ୍ୟଜନକ ଅନୁଭୂତିରେ ଶରବ୍ୟ ହୋଇ ଛାତ୍ର ଜୀବନରୁ ସାମ୍ୟବାଦ ନୀତିରେ ବିଶ୍ୱାସ ରଖିଥିବା ଓ ନିଜକୁ ସାମିଲ କରିଥିବା ଅବନୀ ବରାଳ ସ୍ଥିର କଲେ ଆଉ ସରକାରୀ ଚାକିରି କରିବି ନାହିଁ । ପାର୍ଟିକାମ କରିବେ ଓ ପ୍ରକାଶନ ସଂସ୍ଥା କରି ଓଡ଼ିଆ ଭାଷା ସାହିତ୍ୟର ବିକାଶ ନିମନ୍ତେ ନିଜକୁ ନିୟୋଜିତ କରିବେ । ଏଇପରି ଅବସ୍ଥାରେ ସେ ନିଜର ଜୀବନ ତରିକୁ ସଂସାର ରୂପକ ମହାର୍ଣ୍ଣବରେ ଚାଳନା କରୁଥିବା ବେଳେ ମଣିକାଞ୍ଚନର ସଂଯୋଗ ଘଟିଥିଲା ।

ସାମ୍ୟବାଦୀ ଆନ୍ଦୋଳନର ଆଦ୍ୟ ପ୍ରବର୍ତ୍ତକ, ମହାନ୍ ସ୍ୱାଧୀନତା ସଂଗ୍ରାମୀ ତଥା ବିପ୍ଳବୀ ନେତା ପ୍ରାଣନାଥ ପଟ୍ଟନାୟକଙ୍କ ଉଦ୍ୟମରେ ଖୋର୍ଦ୍ଧାର ବରୁଣେଇ ପାହାଡ଼ର ଅନତି ଦୂରରେ ପ୍ରତିଷ୍ଠା ଲାଭ କଲା ଖୋର୍ଦ୍ଧା କଲେଜ । ସେଇଠି ସାମ୍ୟବାଦୀ ଯୁବକ ଅବନୀ ବରାଳ ପ୍ରାଣନାଥ ପଟ୍ଟନାୟକଙ୍କ ଦ୍ୱାରା ଆକର୍ଷିତ ହୋଇ ୧୯୫୯ ମସିହା ଜୁଲାଇ ମାସ ୧୯ ତାରିଖରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗଦେଲେ । ସେ କେବଳ ସେଠାରେ ଅଧ୍ୟାପକ ହୋଇ ବିଦ୍ୟାର୍ଥୀମାନଙ୍କୁ ଶିକ୍ଷାଦାନ କରୁ ନ ଥିଲେ, ଖୋର୍ଦ୍ଧା କଲେଜର ପ୍ରତିଷ୍ଠାତା ପ୍ରାଣନାଥ ପଟ୍ଟନାୟକଙ୍କ ସ୍ୱପ୍ନକୁ ସାକାର କରିବାକୁ ଯାଇ କାୟା ସହିତ ଛାଇ ପରି ରହି କଲେଜର ପ୍ରଭୂତ ଉନ୍ନତି କଲେ ନିଜକୁ ଭାଗୀଦାର କରିଥିଲେ । ଖୋର୍ଦ୍ଧା କଲେଜରେ ଅଧ୍ୟାପକ ଭାବରେ ଯୋଗଦେଲେ କଲେଜର ଇଟକାଠକ ତିଆରି କରିଥିବା ଅବନୀ ବରାଳ ସେଇଠି ଅଧ୍ୟକ୍ଷ ପଦରେ ଅଧିଷ୍ଠିତ ହୋଇ ୧୯୯୨ ମସିହାରେ ଅବସର ନେଲେ ।

ଏଉ ଅବଧି ମଧ୍ୟରେ ପ୍ରଫେସର ବରାଳ କେବଳ ଶିକ୍ଷାଦାତାର ଭୂମିକା ମଧ୍ୟରେ ସୀମିତ ନ ଥିଲେ, ଥିଲେ ବହୁ ପ୍ରତିଭାର ପ୍ରତିଭାନ୍ୱିତ ପ୍ରଚଣ୍ଡ ପ୍ରଜ୍ଞାର ଦିଗନ୍ତପ୍ରସାରୀ ଦିଗ୍‌ଦର୍ଶକ । ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଭାରତର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ସୃଷ୍ଟି ହୋଇଥିବା କମ୍ପନରୁ ଦେଶରେ ଧନୀ-ଗରିବ, ଥିଲାବାଲା- ନ ଥିଲାବାଲା, ଶୋଷକ-ଶୋଷିତ ଶ୍ରେଣୀ ମଧ୍ୟରେ ମୁଣ୍ଡ ଟେକିଥିବା ବୈଷମ୍ୟର ମେଘନାଦ ପାଚେରୀକୁ ଭାଙ୍ଗି ଏକ ଶୋଷଣହୀନ, ଶ୍ରେଣୀହୀନ ସାମ୍ୟବାଦୀ ସମାଜ ପ୍ରତିଷ୍ଠା ପାଇଁ ଯେଉଁ ଦୁଆ ଉଠିଥିଲା, ତାହା କେବଳ ରାଜନୈତିକ ଭିତ୍ତିଭୂମି ମଧ୍ୟରେ ସୀମିତ ନ ଥିଲା, ବ୍ୟାପି ଯାଇଥିଲା ସାହିତ୍ୟ, ସଂସ୍କୃତି ଓ ରଙ୍ଗମଞ୍ଚ ସ୍ତରକୁ । ସେ ପ୍ରତ୍ୟକ୍ଷ ଭାବରେ ସାମ୍ୟବାଦ ଆନ୍ଦୋଳନ ସହିତ ସାମିଲ ହୋଇ ଆନ୍ଦୋଳନକୁ ତୀବ୍ରତର କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ମଧ୍ୟ ଜନଗଣଙ୍କ ମନକୁ ସାମ୍ୟବାଦ ଭାବଧାରାରେ ବଶବର୍ତ୍ତୀ କରାଇବା ପାଇଁ ରଙ୍ଗମଞ୍ଚକୁ ପ୍ରକୃଷ୍ଟ ମାଧ୍ୟମରୂପେ ବିବେଚନା କରି ରଙ୍ଗମଞ୍ଚ ସହିତ ସଂପୃକ୍ତ ହୋଇଥିଲେ । ନିଜେ ମୁହଁରେ ରଙ୍ଗ ମାଖି ହୋଇ ନାଚିବା ସହିତ ଅନ୍ୟମାନଙ୍କୁ ନଚେଇଛନ୍ତି, ରଙ୍ଗମଞ୍ଚର ବିକାଶରେ ବ୍ୟକ୍ତିଗତ ଉଦ୍ୟମ କରି ସଫଳ ବିନ୍ଧାଣୀର ଭୂମିକା କେବଳ ନିର୍ବାହ କରି ନ ଥିଲେ ଜଣେ ସଫଳ ମଞ୍ଚନାୟକ ଭାବରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ ।

ସହଜେ ତ ପ୍ରାଧ୍ୟାପକ ବରାଳ ଥିଲେ ଓଡ଼ିଆ ଭାଷା ସାହିତ୍ୟର ପେସାଦାର ଅନୁଗାମୀ । ତାଙ୍କ ସାରସ୍ୱତ ସାଧନା ଥିଲା ଧରାବନ୍ଧା । ଶିକ୍ଷକ ସଂଗଠନର କାଣ୍ଡାରି ଭାବେ ଶିକ୍ଷକମାନଙ୍କର ସମସ୍ୟାରେ ପ୍ରତ୍ୟେକ ମୁହୂର୍ତ୍ତରେ ବୁଡ଼ି ରହି ମଧ୍ୟ ସାହିତ୍ୟ ସାଧନାକୁ ହାତଛଡ଼ା କରି ନ ଥିଲେ । ପ୍ରତିଦିନ କିଛି ଲେଖିବା ହିଁ ତାଙ୍କର ଧରାବନ୍ଧା ନିୟମରେ ପଡ଼ିଯାଇଥିଲା । ଫଳରେ ତାଙ୍କ ଲେଖନୀ ନିସୃତ 'ପ୍ରେମର ଅନ୍ୱେଷଣରେ ଗୋଟିଏ ତରୁଣୀ', 'ଅପରାହ୍ନର ଛାଇ', 'ମଞ୍ଚକନ୍ୟାର କାହାଣୀ', 'ମାୟାବିନୀ ରାତ୍ରି', 'ଇସ୍ପାତ' ଓ 'ହିରୋସୀମା ନାଗାସାକୀ ଆଉ ନୁହେଁ, ଆଉ ନୁହେଁ' ସମେତ ଅନେକ ଶିକ୍ଷା-ଶିକ୍ଷକ-ଶିକ୍ଷାୟତନ ସମ୍ପର୍କିତ ଅନେକ ଗ୍ରନ୍ଥ ଗୋଟିଏ ଗୋଟିଏ ଅନବଦ୍ୟ ସୃଷ୍ଟି । ତାଙ୍କର ସବୁ ଲେଖାରେ ସାମ୍ୟବାଦର ବାସ୍ନା । ଶୋଷିତ, ଅସହାୟ, ବୁଭୁକ୍ଷିତ, ସର୍ବହରାର ସମସ୍ୟା ସଗୁମ୍ଫିତ, ପ୍ରତିବିମ୍ବିତ । ଶିକ୍ଷକ ମହାସଂଘର ମୁଖପତ୍ର 'ଶିକ୍ଷା ସମସ୍ୟା' ତାଙ୍କର ମାନସ ସନ୍ତାନ । କ୍ରମାଗତ ଭାବେ ପ୍ରକାଶ ପାଉଥାସୁଛି । ପ୍ରତ୍ୟେକ

ସ୍ତରର ଶିକ୍ଷକମାନଙ୍କୁ ନିଜର ବୃତ୍ତି ସଂପର୍କରେ ଢେର୍ ଢେର୍ ସୂଚନା ପ୍ରଦାନ କରିପାରିଛି ।

ପ୍ରାଧ୍ୟାପକ ବରାଳଙ୍କର ମୁଁ ଜଣେ ଛାତ୍ର । ପ୍ରଥମେ ମୁଁ ତାଙ୍କୁ ଜାଣିଲି ୧୯୭୧ ମସିହାରେ । ତତ୍କାଳୀନ ଖୋର୍ଦ୍ଧା କଲେଜ ମୁଁ କଲେଜରେ ପଢ଼ିଲା ବେଳକୁ ନାମ ପରିବର୍ତ୍ତିତ ହୋଇ ପ୍ରାଣନାଥ କଲେଜ ନାମରେ ନାମିତ ହୋଇ ସାରିଥିଲା । ସେଇଠି ସେ ମହାଶୟଙ୍କର ଦର୍ଶନ ଲାଭ କରିଥିଲି । ଶୁଭ୍ର ଧୋତି ପଞ୍ଜାବୀ ପରିଧେୟ ସ୍ବଚ୍ଛ ସବଳ ମଣିଷ । କାନ୍ଧରେ ଧଳା ଗାମୁଛା । କଲେଜ ପରିଚାଳନାରେ ସେ ମହାଶୟଙ୍କର ଅଦମନୀୟ ଉଦ୍ୟମକୁ ଅଙ୍ଗେ ନିଭେଇଛି । କଲେଜ ପାଠ ପଢ଼ାପରେ ଶିକ୍ଷକତା କରିଛି । ଏଇ ଅବଧି ମଧ୍ୟରେ ସାହିତ୍ୟ କ୍ଷେତ୍ରରେ ମନୋନିବେଶ କରି ତାଙ୍କ ସଂସ୍ପର୍ଶରେ ଆସିଛି । ସବୁଥିରେ ତାଙ୍କ ଅକଳନୀୟ ଦକ୍ଷତାରେ ଉଦ୍‌ବୁଦ୍ଧ ହୋଇଛି । ଶିକ୍ଷକ ମହାସଂଘର ମଙ୍ଗୁଆଳଭାବେ ଶିକ୍ଷକଜାତି ଏବଂ ଓଡ଼ିଶାରେ ଶିକ୍ଷା ବ୍ୟବସ୍ଥାରେ ଆମୂଳଚୂଳ ପରିବର୍ତ୍ତନର ଯେଉଁ ସାହାରା ସୃଷ୍ଟି କରିଗଲେ, ତାହା ଏ ଜାତି ପାଇଁ ଚିରକାଳ ସ୍ମରଣୀୟ ହୋଇ ରହିବ ।

ସେ ଆଜି ନାହାନ୍ତି । ଆମ୍ଭମାନଙ୍କ ଠାରୁ ଅନ୍ତର୍ହିତ । ପରଲୋକଗତ । ୨୦୧୩ ମସିହା ନଭେମ୍ବର ମାସ ୭ ତାରିଖ ସମଗ୍ର ଶିକ୍ଷକକୁଳ ପାଇଁ ଦାରୁଣ ଆଘାତର ଦିନ । ସେହି ଚିର ସ୍ମରଣୀୟ, ଚିରବନ୍ଦନୀୟ ମହାନ୍ ସଂଗ୍ରାମୀ ତଥା ଶତ ସଂଗ୍ରାମର ଅପରାଜେୟ ମହାନାୟକଙ୍କର ସ୍ମୃତିକୁ ଉଦ୍‌ଜୀବିତ କରି ରଖିବା ସଙ୍ଗେ ସଙ୍ଗେ ତାଙ୍କର ଅଧୁରା ସ୍ୱପ୍ନକୁ ସାକାର କରିବାରେ ଶିକ୍ଷକ ସମାଜ ପ୍ରତିଶ୍ରୁତି ସ୍ୱରୂପ ପ୍ରତିବଦ୍ଧତା ହେବା ଏକାନ୍ତ ଅପରିହାର୍ଯ୍ୟ ଶେଷରେ ସେହି ମହାନ୍ ପୁରୁଷ ତଥା ମୋର ପୂଜ୍ୟ ଗୁରୁଙ୍କର ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରିବା ସହିତ ତାଙ୍କର ଶୋକସନ୍ତପ୍ତ ପରିବାରଙ୍କୁ ପ୍ରଭୁ ଶ୍ରୀଜଗନ୍ନାଥ ଧୈର୍ଯ୍ୟ ଦିଅନ୍ତୁ– ଶାନ୍ତି ଓ ସୁଖରେ ରଖନ୍ତୁ ପ୍ରାର୍ଥନା କରୁଛି ।

* * *

*** କୋଷାଧକ୍ଷ**

**ନିଖିଳ ଉତ୍କଳ ନିମ୍ନ ମାଧମିକ ଶିକ୍ଷକ ସଂଘ**

## କବିତା ବିଭାଗ

# ଘେନ ସଲାମ

✸ ଶ୍ରୀ ମାଧବ ବିଶ୍ୱାଳ

କାହାଲାଗି ତୁମେ ଅବନୀ ବାବୁ ତ
କାହାଲାଗି ତୁମେ ଅବନୀ ଭାଇ
ମୋର ଲାଗି ତୁମେ ଶିକ୍ଷାଗୁରୁ ଅଟ
ଦୀକ୍ଷା ଗୁରୁ ମଧ କହିବି ମୁହିଁ ।।

ଭଲପାଅ ବୋଲି ପାଖକୁ ନେଇଣ
ବାଧକରି ପାଖେ ବସାଉଥିଲ,
ଶିକ୍ଷକ ସମସ୍ୟା ବୁଝିବା ପାଇଁକି
ତମ ସହକାରୀ ବନାଇ ଦେଲ ।।

କେତେ ଯେ ଶିଖିଛି ତୁମ ଠାରୁ ମୁହିଁ
ଲେଖିଲେ ତାହା ତ ସରିବ ନାହିଁ,
ଏ ଜୀବନ ମୋର ଧନ୍ୟ ହୋଇ ଅଛି
ତୁମ ପରି ଗୁରୁ ପାଇଣ ମୁହିଁ ।।

ତୁମ ଋଣ କେବେ ସୁଝି ପାରିବନି
ଏ ଜନ୍ମେ ନୁହେଁ କି ପରଜନ୍ମରେ,
ଟିକେ ସେବାକରି ପାରିଥିଲେ ଅବା
ତୃପ୍ତି ଲଭିଥା'ନ୍ତି ମୋର ମନରେ ।।

ହେ ସୁଯୋଗ ବାରେ ଦେଲନାହିଁ କା'ରେ
କଷ୍ଟକାଳେ କିଏ ଭୋଗିବ ବୋଲି,
ଚୁପ୍‌ଚାପ ତୁମେ ଆଖି ବୁଜିଦେଲ
ସେ ପୁରକୁ ଗଲ ନୀରବେ ଚାଲି ।।

ଆଉ କିଏ ଅଛି ତୁମ ସମକକ୍ଷ
ବିଶ୍ୱ ଦରବାରେ ଶିକ୍ଷକ ଲାଗି,
ଲଢ଼େଇ କରିବ ଯୋଦ୍ଧାଟିଏ ସାଜି
ସୁଖ ସ୍ୱାଚ୍ଛନ୍ଦ୍ୟକୁ ଦେଇଣ ତେଜି ।।

ଚାଷ: ମୂଲିଆର ପ୍ରତିନିଧି ତୁମେ
ଲଢୁଥିଲ ଦାନା କନାର ପାଇଁ,
ସବୁରି ଆଖିରେ ଲୋତକର ବନ୍ୟା
ତୁମ ବିଚ୍ଛେଦ ନ ପାରି ସହି ।।

ଲେଖିବନି ଆଉ ସଂଗ୍ରାମର କଥା
ତୁମର ସେ ଶକ୍ତିଶାଳୀ କଲମ,
ହେ ସଂଗ୍ରାମୀ ବୀର ଏ ଅଧମ ଛାତ୍ର
ଏ ପୁରୁ ଜଣାଏ ତା'ର ସଲାମ ।।

* * *

* କାର୍ଯ୍ୟକାରୀ ସଭାପତି
ଶିକ୍ଷକ ମହାସଂଘ

# ହେ ବିଜୟୀ ବୀର

✱ ଶ୍ରୀ ନିତ୍ୟାନନ୍ଦ ଦାସ

ମହାରଥୀ ଶୋଇଗଲା
ଚିର ନିଦ୍ରା ବରି
କିଏ ଆଉ ଚଳାଇବ
ମହାସଂଘ-ତରୀ ।

ଉତ୍ସାହ- ପ୍ରେରଣା ଭରି
ଶିକ୍ଷକର ପ୍ରାଣେ
ଯୁଝିବ ବଇରି ସଙ୍ଗେ
ତୀକ୍ଷ୍ଣ ମସୀ ବାଣେ ।

କିଏ ଦେବ ଉଦ୍ଦୀପନା
ସାହସ- ଶକତି
ଦୋହଲାଇ ଦେବ କିଏ
ଶତ୍ରୁର ଜଗତୀ ।

ବିଶ୍ୱ ଶିକ୍ଷକ ସଂଘର
ଶକ୍ତ ମେରୁଦଣ୍ଡ
ମଧ୍ୟାହ୍ନର ତେଜୋଦୀପ୍ତ
ଉଜ୍ଜ୍ୱଳ ମାର୍ତ୍ତଣ୍ଡ ।

ସଂଗ୍ରାମର ଅଗ୍ନି ଶିଖା
ବିପ୍ଳବର ଝଣ୍ଡା
ପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱ
ସୁଶାଣିତ ଖଣ୍ଡା ।

ଅନନ୍ୟ- ଅସାଧାରଣ
ବୀର ଅରିନ୍ଦମ
ପୌରୁଷ-ପୁରୁଷକାର
କୋଟି ସିଂହସମ ।

ବାଗ୍ମୀବର-ବାଣୀପୁତ୍ର
ମହାପରାକ୍ରମୀ
ଯାଇଛ ମୃତ୍ୟୁକୁ ଆଜି
ତୁମେ ଅତିକ୍ରମି ।

ବିଶ୍ୱ ବିଘୋଷିତ ବୀର
କାଳର ବରାଳ
ଗର୍ଭେ ହେବ ନାହିଁ ଜୀର୍ଣ୍ଣ
ଅବନୀ ବରାଳ ।

କାଳଜୟୀ ହେଲ ତୁମେ
ଯାବତ ଚନ୍ଦ୍ରାର୍କେ
ହସୁଥିବ ଯଶୋଦେହେ
କୀରତି କୋଣାର୍କେ ।

ବିଶ୍ୱ କରେ ପ୍ରଣିପାତ
ନୁଆଇଁ ତା' ଶିର
ହାଦିରେ-ଆଦିରେ ଘେନ
ହେ ବିଜୟୀ ବୀର ।

✱✱✱

✱ ପିଅନ, ସୁନାରୁଇ ନୋଡାଲ ଉ.ପ୍ରା. ବିଦ୍ୟାଳୟ
ବାଲିଆପାଳ, ବାଲେଶ୍ୱର

# ତୁମକୁ ଲାଲ୍ ସଲାମ୍

✲ ଶ୍ରୀ କ୍ଷୀରୋଦ କୁମାର ବିଶ୍ୱାଳ

ମହାସଂଘର ମହାନାୟକ ହେ ସଂଗ୍ରାମର ଚିରସାଥୀ
ଶିକ୍ଷକ କୁଳର ଚିରସ୍ମରଣୀୟ ତୁମେ ଥିଲ ମହାରଥୀ ।

ତୁମେ ସାହିତ୍ୟିକ ତୁମେ ଅଧ୍ୟାପକ ଗାଳ୍ପିକ ତୁମେ କବି
ପ୍ରାବନ୍ଧିକ ତୁମେ ସୁବକ୍ତା ତୁମେ ତୁମେ ଥିଲ ଅନୁଭବୀ

ତରବାରୀ ଠାରୁ ଆହୁରି ଶାଣିତ ତୁମ କଲମର ମୂନ
ନିର୍ଭୀକ ତୁମେ ଚିରବିପ୍ଳବୀ ତୁମେ ହେ ସାଥୀ ମହାନ୍ ।

ଖୋଲାଖୋଲି ମତ ବ୍ୟକ୍ତ କରୁଥିଲ କାହାକୁ ନ ଥିଲା ଡ଼ର
ଗୋଟିଏ ଘାଟରେ ପାଣି ପିଉଥିଲେ ଶାସକ ବିରୋଧୀ ଦଳ ।

ବ୍ରହ୍ମଚାରୀ ଗଲେ ସବ୍ୟସାଚୀ ଥିଲେ ନାହାନ୍ତି କୈଳାସ ଭାଇ
ସଭା ସମିତିରେ ସଭିଏଁ ଖୋଜନ୍ତି ଅବନୀ ବରାଳ କାହିଁ ?

'ଶିକ୍ଷା ସମସ୍ୟା' ଶିକ୍ଷକ ବାର୍ତ୍ତା 'ଶିକ୍ଷକ ଦର୍ପଣେ' ଲେଖା
'ଶିକ୍ଷା ପ୍ରଦୀପ'ରେ ତୁମ ଅନୁଚିନ୍ତା ଆଉକି ହୋଇବ ଦେଖା ?

ପ୍ରତିଷ୍ଠାତା ତୁମେ ନୂଆ ଦୁନିଆର ବାମପନ୍ଥୀ ଚିନ୍ତାଧାରା
ସାମ୍ୟବାଦର ପ୍ରଚାରକ ତୁମେ ଶ୍ରେଣୀହୀନ ଭାବଧାରା ।

ତୁମ ନେତୃତ୍ୱରେ ଲକ୍ଷେ ଶିକ୍ଷକ ରାଜଧାନୀ ରାଜଦାଣ୍ଡେ
ରୁଣ୍ଡ ହେଉଥିଲେ ଶୁଣୁଥିଲେ ବସି କହୁଥିଲ ଯାହା ତୁଣ୍ଡେ ।

ଶିକ୍ଷକର ଗର୍ବ ଗୌରବ ତୁମେ ଆଦର୍ଶ ଶିକ୍ଷକ ଥିଲ
ଛାତ୍ରଛାତ୍ରୀମାନେ ପ୍ରଶଂସା କରନ୍ତି ଧନ୍ୟ ଅବନୀ ବରାଳ ।

ଉପସଭାପତି ତୁମେ ଥିଲ ସାଥୀ ବିଶ୍ୱ ଶିକ୍ଷକ ସଂଘର
ବାମପନ୍ଥୀ ନେତା ଅବନୀ ବରାଳ ଦୃଢ଼ ନେତୃତ୍ୱ ତୁମର ।

ଶିକ୍ଷା ଅଧିକାର ଆଇନକୁ ତୁମ୍ଭେ ଆଲୋଚନା କରୁଥିଲ
ସାକ୍ଷର ହୋଇବେ ସଚେତନ ହେବେ ଧନ୍ୟ ହେବ ଉତ୍କଳ ।

ସମାଜବାଦର ପ୍ରବକ୍ତା ପ୍ରବର ଅଧ୍ୟାପନା ଥିଲା ବ୍ରତ
ଶିକ୍ଷା ସଂସ୍କାରକ ଶ୍ରେଷ୍ଠ ଶିକ୍ଷାବିତ୍ ଶାସକ ହୁଅନ୍ତି ଭୀତ ।

ଗଣ ସଂଗ୍ରାମର ହେ ମହାନାୟକ ବିପ୍ଳବୀ ପ୍ରାଣନାଥ
ତୁମରି ଲିଖିତ ଜୀବନୀ ଗ୍ରନ୍ଥ ସର୍ବେ ଦେଖି ଉଲ୍ଲସିତ ।

ପ୍ରାଣନାଥ ତୁମ ଆଦର୍ଶର ନେତା ଅନନ୍ତ ତୁମର ସାଥୀ
ସାମ୍ୟବାଦର ପ୍ରତିଷ୍ଠାତା ଥିଲେ ଉତ୍କଳରେ ଭଗବତୀ ।

ଶିକ୍ଷକ ସମାଜେ ରହିଥିଲ ତୁମ୍ଭେ ରହିଥିବ ଚିରକାଳ
ଯଶ, କୀର୍ତ୍ତି, କୃତି ଅମର ରହିବ ସାଥୀ ଅବନୀ ବରାଳ ।

ତ୍ୟାଗ, ନିଷ୍ଠାର ପ୍ରତିମୂର୍ତ୍ତି ତୁମେ ତୁମେ ହେ ଦେବତା ସମ
ଚିରସଂଗ୍ରାମୀ ତୁମେ ଲଢୁଥିଲ ତୁମକୁ ଲାଲ୍ ସଲାମ୍ ।

***

* ଅବସରପ୍ରାପ୍ତ ଶିକ୍ଷକ
ଶଙ୍କରପୁର ନୋଡାଲ ଉ.ପ୍ରା. ବିଦ୍ୟାଳୟ
କଟକ

# ହେ ମହାନ ନେତା ! କୋଟି ନମସ୍କାର

✻ ଶ୍ରୀ ଭୀମସେନ ପ୍ରଧାନ

ଶିକ୍ଷକ ଜାତିର ମଉଡ଼ମଣି
ଧରାଶାୟୀ ଆଜି
ଅଭିମାନେ ବୁଜିଦେଲେ ଆଖି
ନିସ୍ପନ୍ଦ ଶରୀର ତାଙ୍କର ।
ନାଟ୍ୟକାର, କଥାକାର, ପ୍ରିୟନେତା
ଖଟିଖିଆ, ମେହେନତି ମଣିଷର
ସବୁମାୟା ମମତାକୁ କାଟି
ଚାଲିଗଲେ ଆରପାରି
ଛାଡ଼ିଗଲେ ଅତୀତ ତାଙ୍କର ।
ଅତୀତକୁ ରୋମନ୍ଥନ କଲେ
ହୃଦୟରେ କୋହ ଆସେ
ଶିକ୍ଷକ ସଂହତି ଜାତି ପ୍ରୀତି
ଯା' ହୃଦୟେ ଜାଗରିତ ଥିଲା
ସେ ଆଜି ମରିବି ଅମର ।
ବେସରକାରୀ ଶିକ୍ଷକଙ୍କ ପାଇଁ
ସାହା ଭରସାର କେନ୍ଦ୍ର
ମହାସଂଘ ଗଢ଼ିଥିଲେ
ଆଣିଥିଲେ ସ୍ଥାୟୀ ଇସ୍ତାହାର ।
ଯୌବନର ଉଦ୍ଦାମତା
ନେତୃତ୍ୱର ମାଦକତା
ଯାହାଙ୍କୁ ଅଗ୍ନିସମ କରିଥିଲା
ଜାଳିଥିଲା ବିପ୍ଳବର ବହ୍ନି
ସ୍ୱାଭିମାନ ରକ୍ଷାପାଇଁ ଶିକ୍ଷକ ଜାତିର ।

ପରିଣତ  ବୟସରେ
ଅନେକ ଯନ୍ତ୍ରଣାକୁ ହୃଦୟରେ ବହି
ମନେ ମନେ କାନ୍ଦୁଥିଲେ
ଅଭିମାନେ କହୁଥିଲେ
କେହି ଆଜି ନାହାଁନ୍ତି ମୋହର ।
ନିଃସଙ୍ଗ ମଣୁଥିଲେ
ମନେ ମନେ ଭାବୁଥିଲେ
ଯେଉଁମାନେ ପ୍ରିୟ ଥିଲେ
ଦୂରଜନ ହୋଇଗଲେ
ଛଳନାର ବଳୟ ମଧ୍ୟରେ
ସେହି ଅଭିମାନେ ଅବା
ହଠାତ୍ ବୁଜିଦେଲେ ଆଖି
ରହିଲେନି ଦେଖିବାକୁ
ମହାସଂଘର ବିପର୍ଯ୍ୟୟ
ଅଧୋଗତି ଶିକ୍ଷା ଓ ଶିକ୍ଷକ ଜାତିର ।
ହେ ମହାନ ଯୋଦ୍ଧା !
କରେ ଆଜି କୋଟି ନମସ୍କାର
ଅଭିମାନ ତ୍ୟାଗକରି
ଆଶୀର୍ବାଦ କର ଥରେ
ଗଢ଼ିଉଠୁ ସଂଗଠନ
କରୁ ପୁଣି ତବ ଜୟ ଜୟକାର ।

***

* ଉପଦେଷ୍ଟା, ଓଲ୍‌ଷ୍ଟା, କଟକ

# ଆଜି ବି ତୁମକୁ ଚାହେଁ

✸ ଶ୍ରୀମତୀ ଉଷାରାଣୀ ମଲ୍ଲିକ

ହେ ଅବନୀ ପତି,
ଅବନୀର ଭାର ଶିରେ ଧରି
ଛତ୍ରପତି ଶିବାଜୀଙ୍କ ଭୂମିକାରେ ହୋଇ ଅବତୀର୍ଣ୍ଣ
କିଆଁ ତ୍ୟାଗ କଲ ତରବାରୀ ?

ଶିକ୍ଷାର ଆକାଶେ,
ରଚି କ୍ରାନ୍ତିକାରୀ ହୋରି ଖେଳ
ଆଜି କିଆଁ ଛତ୍ରଭଙ୍ଗ ? ଆମେ ସବୁ ତବ ପୃଷ୍ଠ ଭାଗେ
ଏ କି କ'ଣ ବିଶ୍ରାମର ବେଳ ?

ଏ ସାରା ଓଡ଼ିଶା,
ଥିଲା ତୁମ ଶିକ୍ଷାର ସାମ୍ରାଜ୍ୟ
ଶାସ୍ତ୍ରଶିକ୍ଷା, ମନ୍ତ୍ରଦୀକ୍ଷା ସବୁଥିରେ ପାରଙ୍ଗମ
ସବୁର କି ଶେଷ ସୀମା ଅଛ ?

ଜୀବନଟା ସାରା,
ମୁକ୍ତାକାଶ ରଙ୍ଗମଞ୍ଚ ପରେ
ଅଙ୍କ ପରେ ଅଙ୍କେ ସାଜି ସଫଳ ନାୟକ
ଆଜି ତୁମେ ପୁଷ୍ପ ସବାରୀରେ ।

ହେ ବିଜୟୀ ବୀର,

ମସ୍ତକରେ ଅବିର ତିଳକ

କିଛି ଦେଶେ ପୁଷ୍ପମାଲ୍ୟ ଶୋଭେ ବିଜୟ ପ୍ରତୀକ

ଘେନା ହେଉ ଶିକ୍ଷକର କୃତଜ୍ଞ ସ୍ତବକ ।

ହେ ମହାନାୟକ,

ଯବନିକା ପଡ଼ିବାର ବେଳ ନୁହେଁ

ଅଜ୍ଞାନ ଅନ୍ଧକାରର ପରଦା ହଟାଇବାକୁ

ଶିକ୍ଷକ ସମାଜ ଆଜି ପୃଷ୍ଠଭାଗେ

ତୁମକୁ ହିଁ ଚାହେଁ, ତୁମକୁ ହିଁ ଚାହେଁ ।

***

* ପ୍ରଧାନଶିକ୍ଷୟିତ୍ରୀ

ରାଧାନାଥ ଉ.ପ୍ରା. ବିଦ୍ୟାଳୟ

ସା-କଳଦିଆ, ଆଳି, କେନ୍ଦ୍ରାପଡ଼ା

# ଅବନୀ ବରାଳଙ୍କ ଅଗଣିତ ରୂପ

* ଶ୍ରୀ ବୀରେନ୍ଦ୍ରକୁମାର ପଣ୍ଡା

ତୁମେ ଥିଲ ବିଶ୍ୱବନ୍ଧ୍ୟ ଶିକ୍ଷାର ପ୍ରଦୀପ
ବିପ୍ଳବର ସିଂଘନାଦ ସଂଗ୍ରାମୀ ଶପଥ,
ଶିକ୍ଷକ ଜାତିର ତୁମେ ଚୀର ଅଗ୍ରଦୂତ
ତପସ୍ୟାର ତ୍ୟାଗବୀର ପୂଜ୍ୟ ଭଗୀରଥ ।

ତୁମେ ଥିଲ ସମାଜସେବାର ମନ୍ତ୍ର
ଶକ୍ତି–ଶିବ ମିଳନର ରୂପ
ବୀରତ୍ୱର ବହ୍ନିମାନ ଅଗ୍ନିର ଶପଥ
ତୁମେ ଚାଲିଗଲା ପରେ ନିଃସ୍ୱ ଆଜି ଶିକ୍ଷକ ସମାଜ ।

ସବୁଠାରେ ସୀମାହୀନ ଶୋକର ସଙ୍ଗୀତ
ବିବର୍ଣ୍ଣ ଦିଶୁଛି ଆଜି ବ୍ୟଥିତ ଉତ୍କଳ
ପ୍ରଣାମ କରନ୍ତି ସବୁ ଲେଖନୀ ପୁସ୍ତକ
ସିଲଟର ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୂପ ।

ଶିକ୍ଷାଳୟ ବିଦ୍ୟାଳୟ ଅନେକ ସ୍ତାବକ
ଏତିକି ପ୍ରାର୍ଥନା ଆହେ ଶାଶ୍ୱତ ବିଗତ
ତୁମରି ଆଶିଷ ଗଢୁ
ଅମର ଅବନୀ ବରାଳଙ୍କ ଅଗଣିତ ରୂପ ।

* ସଭାପତି, ଓଲ୍‌ଷ୍ଟା

# ଶିକ୍ଷକ ସୌରଭ

✱ ଶ୍ରୀ ହରମୋହନ ହରିଚନ୍ଦନ

ଯୁଗ ଯୁଗ ଧରି ଏ ଶିକ୍ଷକ ଜାତି ମରୁଥିଲା ଜଳିପୋଡ଼ି
ଭଗୀରଥ ପରି ଉଦ୍ଧାର ନିମନ୍ତେ ମହାସଂଘ ଦେଲ ଗଢ଼ି ।
ଏ ଜାତି ତା' ହାତ ଟେକୁଛି ଉଚ୍ଚକୁ ତୁମେ ଫିଟାଇଛ ବେଡ଼ି ।
ଏ ଜାତି ମୁଖରେ ଫୁଟାଇଛ ଭାଷା ଛାଡୁଛି ସେ ସିଂହରଡ଼ି ।
ଏ ଜାତି ବୁଝିଲା ବିପ୍ଳବର ଅର୍ଥ ଅନ୍ୟାୟ ବିରୁଦ୍ଧେ ଲଢ଼ି
ତୁମେ ବୁହାଇଲ ଏ ଜାତି ପ୍ରାଣରେ ମଇତ୍ରୀ ଏକତା ବଢ଼ି ।
ତୁମେ ଶିଖାଇଲ ତ୍ୟାଗର ମନ୍ତ୍ର ନିଜେ ଗଲ ଜଳି ପୋଡ଼ି
ଶିକ୍ଷକ ଜାତିର ଇତିହାସେ ତୁମ ନାମ ସ୍ୱର୍ଣ୍ଣାକ୍ଷରେ ଜଡ଼ି ।
ତୁମରି କଥାରେ ଲାଠି ଗୁଳିଗୁଳା ନିରବରେ ଗଲେ ଉଡ଼ି
କଇଦୀଖାନାର ମୁକୁଳା ଦୁଆର ସେ ଶବଦେ ଗଲା ପଡ଼ି ।
ମନେପଡ଼େ ଆଜି ସେଦିନ ଚନ୍ଦକା ଜଙ୍ଗଲରେ ଦେଲେ ଛାଡ଼ି
ବୁଢ଼ା କାନ୍ଦୁଥିଲେ ତୁମେ ଏକା ଗର୍ବେ ଛାଡୁଥିଲ ସିଂହରଡ଼ି ।
ଆଜି କିନ୍ତୁ ତୁମେ ନିରବ କାହିଁକି ଆମକୁ ଯାଉଛ ଛାଡ଼ି
ସଂଘ ଅଫିସରୁ ନାମାଙ୍କନ ପଟା କିଏ ସେ ନେଇଛି କାଢ଼ି ।
କିଏ ସେ ବୁଝିବ ଶିକ୍ଷକର ଦୁଃଖ ତୁମେ ତ ଅନ୍ଧ ଲଉଡ଼ି
ନିଖିଳ ଉତ୍କଳ ଶିକ୍ଷକ ସଂଘର ହୃଦୟେ ବସିଛ ମାଡ଼ି ।
ତୁମ ପାଇଁ ନିଶ୍ଚେ ବୈକୁଣ୍ଠ ଭବନେ ଅଛି ସିଂହାସନ ପଡ଼ି
ସାର୍ଥକ ଜୀବନ ହୋଇଛି ତୁମର ପର ପାଇଁ ଲଢ଼ି ଲଢ଼ି ।
ଯେଉଁଆଡ଼େ ଯାଅ ଆଶୀର୍ବାଦ ହାତ ଆମଠୁ ନ ନିଅ କାଢ଼ି
'ଶିକ୍ଷକ ସୌରଭ' ଘେନ ପ୍ରଣିପାତ ଜଣାଉଛୁ କରଯୋଡ଼ି ।

✱✱✱

✱ କଣାସ, ପୁରୀ

# କି ଦେଇ ପୂଜିବି ଆହେ ଶିକ୍ଷକ ସର୍ବସ୍ୱ

✸ ଶ୍ରୀ ଦିଲ୍ଲୀପ କୁମାର ତ୍ରିପାଠୀ

କି ଦେଇ ପୂଜିବି ଆହେ ଶିକ୍ଷକ ସର୍ବସ୍ୱ ।
ଓଡ଼ିଶା ନୁହେଁ ସାରା ବିଶ୍ୱେ ରଖିଗଲ ଯଶ ॥
ତୁମେ ଥିଲ ପିତାମହ ଭୀଷ୍ମ ଶିକ୍ଷା ଜଗତର ।
ଶିକ୍ଷକ, କର୍ମଚାରୀଙ୍କ ଜୀବନ ଜୀବିକାର ରୂପକାର ॥
ଏକାଧାରେ ଥିଲ ନେତା, ସୁଲେଖକ, ନାଟ୍ୟକାର ।
ସାଲିସ୍ ବିହୀନ ସ୍ତମ୍ଭକାର, କ୍ରାନ୍ତିର ରୂପକାର
ବାମପନ୍ଥୀ ଚିନ୍ତାଧାରା ତୁମେ ଥିଲ ଇନ୍ଧନ ।
ରାଜ୍ୟ ଓ ଦେଶର ଥିଲ ଶିକ୍ଷକଙ୍କ ସ୍ୱାଭିମାନ ॥
ସମସ୍ତ କାର୍ଯ୍ୟରେ ଆନ୍ତରିକତାର ଆଭାସ ।
ସଂଗ୍ରାମୀ ଇତିହାସ ଥିଲା ତୁମ ଜୀବନ ଇତିହାସ ॥
ସାମାଜିକ, ଶିକ୍ଷା–ଶିକ୍ଷକ ଉନ୍ନତି ପାଇଁ ଥିଲା ତୁମ ଲଢ଼େଇ ।
ପଦଯାତ୍ରା, ସଂଗ୍ରାମରେ ବିଜୟର ବୈଜୟନ୍ତୀ ପତାକା ଉଡ଼େଇ ॥
ବିସ୍ଥାପନ ବିରୋଧି ଆନ୍ଦୋଳନେ ତୁମରି ନେତୃତ୍ୱ ।
ବହୁମୁଖୀ ପ୍ରତିଭାର ତୁମେ ବିଶାଳ ହୃଦୟବାନ ବ୍ୟକ୍ତିତ୍ୱ ॥
ଶିକ୍ଷା–ଶିକ୍ଷକ – ଶିକ୍ଷାୟତନ ସମସ୍ୟା ସମାଧାନେ ଥିଲ ସିଦ୍ଧହସ୍ତ ।
ଉଚ୍ଚଶିକ୍ଷା ଅଭିବୃଦ୍ଧି ତଥା ଗୁଣାତ୍ମକ ବିକାଶ ମାର୍ଗକୁ କରିଣ ପ୍ରଶସ୍ତ ॥
ଶିକ୍ଷକ ସମସ୍ୟା ସମାଧାନେ ଆନ୍ଦୋଳନ କରିଣ ବ୍ୟାପକ ।
ଅନ୍ୟ ରାଜନୈତିକ ନେତୃବର୍ଗ ସହ ରଖି ଘନିଷ୍ଠ ସମ୍ପର୍କ
ନିରାଶ ବୋଧ, ହତାଶ ବୋଧ କେବେ ନୁହଁ ଲକ୍ଷ୍ୟଚ୍ୟୁତ ।
ଅବସରପ୍ରାପ୍ତ ଶିକ୍ଷକ ମୁଁ ଡାକେ ତୁମ ପାଦେ ପ୍ରଣିପାତ ॥

ସଂପାଦକ
ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ,
ଆସିକା ଶିକ୍ଷାଜିଲ୍ଲା



ମହାଯାତ୍ରାରେ ମହାନାୟକ



ଅନ୍ତିମ ସଂସ୍କାରରେ ମୁଖାଗ୍ନି ଦେଉଛନ୍ତି ଜ୍ୟେଷ୍ଠପୁତ୍ର ଆକାଶ